# କେଉଁଝର ମାହାତ୍ମ୍ୟ
## ବା
## ଶ୍ରୀ ଚଣ୍ଡେଶ୍ୱର ଉପାଖ୍ୟାନ





ଶ୍ରୀ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ପ୍ରାଚୀନ ମନ୍ଦିର

ପ୍ରକାଶକ :—

ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ର
ଚଣ୍ଡେଶ୍ୱର

ମୁଦ୍ରଣକାଳ—ମେ, ୧୯୭୧

୮୦୦୦

---

ବହିଟିର ମୂଲ୍ୟ ନୁହେଁ, ଜର୍ଣ୍ଣୋଦ୍ଧାର ନିମିତ୍ତ

ବନ୍ଧୁମାନଙ୍କର ସାହାଯ୍ୟ ମାତ୍ର - **ପାଞ୍ଚଟଙ୍କା।**

ମୁଦ୍ରାକର :—

ଶ୍ରୀ ପ୍ରସନ୍ନକୁମାର ମହାପାତ୍ର
ଶ୍ରୀ ଶାରଦା ପ୍ରେସ,
ମହତାବ ରୋଡ଼
ଭୁବନେଶ୍ୱର-୨

# ଉତ୍ସର୍ଗ ପତ୍ର

ମାନନୀୟ ପଣ୍ଡିତପ୍ରବର ସ୍ୱର୍ଗତ ପିତାମହ ବନମାଳୀ ସାମନ୍ତରାୟଙ୍କ ଆଜୀବନ ବ୍ରତ ଥିଲା ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ପୀଠର ଜଳନ୍ତ ବିଧାନ ଏବଂ ପୌରାଣିକ ଇତିହାସ ସମ୍ବଳିତ ସଂସ୍କୃତ ଭାଷାରେ ଲିଖିତ 'ଚଣ୍ଡେଶ୍ୱର ମାହାତ୍ମ୍ୟ' ଗ୍ରନ୍ଥର ସଂଗ୍ରହ ଓ ପ୍ରକାଶ। ଦୀର୍ଘ [illegible] ବର୍ଷ ପରେ ମହାନ୍ ପୁଣ୍ୟାତ୍ମାଙ୍କର ଗୋଟିଏ ସଦିଚ୍ଛା ଉକ୍ତ ଗ୍ରନ୍ଥ ପ୍ରକାଶ ଫଳରେ ପୂର୍ଣ୍ଣ ହୋଇଥିବାରୁ ଏହା ତାଙ୍କର ପବିତ୍ର ନାମରେ ଉତ୍ସର୍ଗ କରାଗଲା।

ଚଣ୍ଡେଶ୍ୱର
ବିଜୟା ଦଶମୀ
ତା ୩୦।୯।୧୯୭୦



ସ୍ୱର୍ଗତ ପୁଣ୍ୟାତ୍ମାଙ୍କ
ବଂଶାବନତ
ପୌତ୍ର
**ଶ୍ରୀ ମୃତ୍ୟୁଞ୍ଜୟ**

# ଶୁଭାଶୀଷ

କେଦାର-ମାହାତ୍ମ୍ୟ ଗ୍ରନ୍ଥଟିରେ ଶ୍ରୀ ଚଣ୍ଡେଶ୍ୱରଙ୍କ ମହିମା ପ୍ରକାଶିତ । ଓଡ଼ିଶାର ଏହି ସୁପ୍ରାଚୀନ ମନ୍ଦିରଟି ଦ୍ୱିତୀୟ ଯଯାତି (ଚଣ୍ଡୀହର ଦେବ)ଙ୍କ ସମୟରେ ନିର୍ମିତ ହୋଇଥିଲା । ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ତଥା ମନ୍ଦିରର ଶିଳ୍ପକଳା ଦେଖିଲେ ଯେ କୌଣସି ବ୍ୟକ୍ତିଙ୍କ ମନ ଆନନ୍ଦରେ ପୂରିଯିବ । କାଳର କବଳରେ ପଡ଼ି ଅଳ୍ପଦିନ ପୂର୍ବେ ମନ୍ଦିରଟିର ଏକଅଂଶ ଭାଙ୍ଗିଯାଇଛି । ଧର୍ମପ୍ରାଣ ବ୍ୟକ୍ତିମାନେ ଏଥିରେ ଦୁଃଖିତ ହେବା କଥା, ଆଶା କରାଯାଏ ସ୍ଥାନୀୟ କମିଟି ଏଥିପ୍ରତି ସତ୍ୱର ଦୃଷ୍ଟି ଦେଇ ଯଥାଯୁକ୍ତ କାର୍ଯ୍ୟ କରିଯିବେ ।

ଏହି ଗ୍ରନ୍ଥର ପ୍ରକାଶ ନିମନ୍ତେ ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ରଙ୍କ ଅଦମ୍ୟ ଚେଷ୍ଟା ପ୍ରଶଂସନୀୟ । ପ୍ରଭୁଙ୍କର ସର୍ମଦୋଦ୍ଧାର ତଥା ସେବା ପୂଜାର ବିଧି ଅକ୍ଷୁର୍ଣ୍ଣ ରଖିବା ଲାଗି ସେ ଯେପରି ପ୍ରାଣପାତ ପରିଶ୍ରମ ତଥା ଧନବ୍ୟୟ କରିଛନ୍ତି ତାହା ଗ୍ରନ୍ଥର ଭୂମିକା ପାଠକଲେ ଜଣାଯାଏ ।

ମହାପାତ୍ର ମହାଶୟ ଏ ଗ୍ରନ୍ଥ ପ୍ରକାଶକରି ଭକ୍ତମାନଙ୍କର ବହୁ ଉପକାର କରିଛନ୍ତି । ପ୍ରଭୁ ତାଙ୍କର ସର୍ବବିଧ ଉନ୍ନତି କରନ୍ତୁ, ଏହିମାତ୍ର କାମନା ।

**ଶ୍ରୀ ବାଇକୋଳି ଜ୍ୟୋତିଷ ବିଶାରଦ**

ଖଲିକୋଟ

ତା ୨୧ । ୧୦ । ୭୦

# ସୂଚନା

ଉତ୍କଳର ପ୍ରାଚୀନତମ ଓ ଭାରତ ପ୍ରସିଦ୍ଧ ତୀର୍ଥ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଜ୍ଞାପକ କେତେକ ଗ୍ରନ୍ଥ ଯଥା 'ଶ୍ରୀପୁରୁଷୋତ୍ତମକ୍ଷେତ୍ର ମାହାତ୍ମ୍ୟ', 'ନୀଳାଦ୍ରି ମହୋଦୟ', ସୂର୍ଯ୍ୟବଂଶୀୟ ଗଜପତି ପୁରୁଷୋତ୍ତମ ଦେବ ବିରଚିତ 'ମୁକ୍ତିଚିନ୍ତାମଣି' ପ୍ରଭୃତି ସର୍ବଜନ ବିଦିତ । ପୁରୁଷୋତ୍ତମ କ୍ଷେତ୍ର ସଦୃଶ ବର୍ତ୍ତମାନ ଭୁବନେଶ୍ୱର ବା ଏକାମ୍ରକ୍ଷେତ୍ର, ଯାଜପୁର ବା ବିରଜାକ୍ଷେତ୍ର, କୋଣାର୍କ ବା ଅର୍କକ୍ଷେତ୍ର ମଧ୍ୟ ଅତୀତରେ ନିଜର ପ୍ରାଚୀନ ପ୍ରଖ୍ୟାତ ଦେବଦେବୀ ଓ ମନ୍ଦିରମାନଙ୍କ ପାଇଁ ସମଗ୍ର ଭାରତରେ ସୁବିଦିତ ଥିଲା । ତେଣୁ ଭୁବନେଶ୍ୱରର ପୌରାଣିକ ଇତିହାସ 'ଏକାମ୍ର ପୁରାଣ', 'ସ୍ୱର୍ଣ୍ଣାଦ୍ରି ମହୋଦୟ' 'ଏକାମ୍ର ଚନ୍ଦ୍ରିକା' ପ୍ରଭୃତି ପ୍ରାଚୀନ ଗ୍ରନ୍ଥ ଗୁଡ଼ିକରେ ଲିପିବଦ୍ଧ ହୋଇଥିଲା । ଏ ସମସ୍ତ ଗ୍ରନ୍ଥ ମୁଦ୍ରିତ ଓ ପ୍ରକାଶିତ ହୋଇ ସୁଧୀ ସମାଜର ଆଦର ଲାଭ କରିଅଛି । ଯାଜୀପୁର ବା ଯାଜପୁରର ମାହାତ୍ମ୍ୟ ଓ ଗୌରବ ବିରଜା ମାହାତ୍ମ୍ୟ ନାମକ ପୁସ୍ତକରେ ବର୍ଣ୍ଣିତ ହୋଇଅଛି । ଅଳ୍ପ କେତେବର୍ଷ ପୂର୍ବେ ଯାଜପୁରର ସ୍ୱନାମଧନ୍ୟ ବିଦ୍ୟୋତ୍ସାହୀ ବଦାନ୍ୟପ୍ରବର ସ୍ୱର୍ଗତଃ ଚୌଧୁରୀ ନରସିଂହ ଚରଣ ମହାପାତ୍ର ଏହାକୁ ପ୍ରକାଶ କରି ପଣ୍ଡିତମଣ୍ଡଳୀର କୃତଜ୍ଞତା ଭାଜନ ହୋଇଛନ୍ତି । କୋଣାର୍କର ଜଗଦ୍ବିଖ୍ୟାତ ସୂର୍ଯ୍ୟମନ୍ଦିରର କେବଳ ଧ୍ୱଂସାବଶେଷ ବର୍ତ୍ତମାନ ବିଦ୍ୟମାନ । ଏହାର ଐତିହ୍ୟ ଓ ଐଶ୍ୱର୍ଯ୍ୟ ପ୍ରକାଶକ 'ଅର୍କକ୍ଷେତ୍ର ମାହାତ୍ମ୍ୟ' ଗ୍ରନ୍ଥ ମୁଦ୍ରିତ ହୋଇ ନ ଥିବାରୁ ଏପର୍ଯ୍ୟନ୍ତ ଲୋକ ଲୋଚନକୁ ଆସି ପାରିଲ ନାହିଁ । ସେହିପରି ଉଭୟ ତଟରେ ବହୁ ଯୁଗର ପ୍ରାଚୀନ କୀର୍ତ୍ତି ମଣ୍ଡିତ ପ୍ରାଚୀ ନଦୀର

ମାହାତ୍ମ୍ୟ ପ୍ରଭୃତିଙ୍କ ସଂସ୍କୃତ 'ପ୍ରାଚୀ ମାହାତ୍ମ୍ୟ' ଗ୍ରନ୍ଥ ଏପର୍ଯ୍ୟନ୍ତ ତାଳ-ପତ୍ର ପୋଥି ଆକାରରେ ପରିଦୃଷ୍ଟ ହୁଏ । ଏହି ମୂଲ୍ୟବାନ ଗ୍ରନ୍ଥଟି ଏପର୍ଯ୍ୟନ୍ତ ମୁଦ୍ରିତ ଓ ପ୍ରକାଶିତ ନ ହେବା ଦୁଃଖଦାୟକ । ଓଡ଼ିଆ ''ପ୍ରାଚୀମାହାତ୍ମ୍ୟ ଭଦ୍ରଦନ ପୂର୍ବକ ସ୍ୱର୍ଗତଃ ପଣ୍ଡିତ ଗୋବିନ୍ଦ ରଥ ପ୍ରକାଶ କରି ପ୍ରକୃତତତ୍ତ୍ୱଜିଜ୍ଞାସୁ ତଥା ଭକ୍ତ ବୃନ୍ଦର ମହତ୍ ଉପକାର ସାଧନ କରିଥିଲେ । ଏହା ମଧ୍ୟ ଏବେ ଦୁଷ୍ପ୍ରାପ୍ୟ । ଉତ୍କଳର ପଞ୍ଚତୀର୍ଥ ଯଥା ଶ୍ରୀକ୍ଷେତ୍ର, ଏକାମ୍ର, ବିରଜା, ଅର୍କ କ୍ଷେତ୍ର ଓ କପିଳାସର ମାହାତ୍ମ୍ୟ ଜ୍ଞାପକ 'କପିଳ ସଂହିତା' ଏକ ଅତି ଅମୂଲ୍ୟ ଓ ଉପାଦେୟ ଗ୍ରନ୍ଥ । ଭୁବନେଶ୍ୱର ନିବାସୀ ସ୍ୱର୍ଗତଃ ପଣ୍ଡିତ ରତ୍ନାକର ଗର୍ଗବଟୁ 'ଏକାମ୍ର ପୁରାଣ', 'ଏକାମ୍ର ଚନ୍ଦ୍ରିକା' ତଥା 'କପିଳ ସଂହିତା' ଗ୍ରନ୍ଥ ପ୍ରକାଶ କରି ଓଡ଼ିଆ ଜାତିର ଧନ୍ୟବାଦର ପାତ୍ର ହୋଇଛନ୍ତି ।

ଶଙ୍କର କ୍ଷେତ୍ର ବା ଚଣ୍ଡେଶ୍ୱର ଦ୍ୱିତୀୟ ଏକାମ୍ର କ୍ଷେତ୍ରରୂପେ କଳ୍ପିତ ହୋଇଅଛି । ଅଧୁନା ଭଗ୍ନ ଏହାର ରମଣୀୟ କାରୁକାର୍ଯ୍ୟ ଖଚିତ ମନ୍ଦିରଟି ସୋମବଂଶର ଜନୈକ ଶ୍ରେଷ୍ଠ ରାଜା ପୂର୍ବରେ ଗୌଡ଼, ରାଢ଼ ଓ ବଙ୍ଗ ବିଜୟୀ, ପଶ୍ଚିମରେ ଡାହାଳ ଲାଟ-ମାଳବ ଓ ଗୁର୍ଜ୍ଜର ବିଜେତା, ସୁଦୂର ଦକ୍ଷିଣରେ କାଞ୍ଚୀ ଓ କେରଳ ରାଜ୍ୟ ପଦାନତ କରିଥିବା, କୋଶଳ-ଉତ୍କଳ, ତ୍ରିକଳିଙ୍ଗର ସମ୍ରାଟ୍ ଦ୍ୱିତୀୟ ଉଦ୍ୟୋତ ବା ଚଣ୍ଡୀହର ଦେବଙ୍କ ଅକ୍ଷୟ କୀର୍ତ୍ତି । ପୂର୍ବକାଳରେ ପ୍ରସିଦ୍ଧ ରାଜା ରାଣୀମାନେ ନିଜ ନିଜ ନାମକୁ ସ୍ମରଣୀୟ କରିବାପାଇଁ ଉତ୍ତୁଙ୍ଗ ମନ୍ଦିରମାନ ନିର୍ମାଣ କରିଥିବା ଇତିହାସର ଅକାଟ୍ୟ ପ୍ରମାଣ ମିଳେ । ଯଥା ଭୁବନେଶ୍ୱରସ୍ଥ ମୋହିନୀମନ୍ଦିର ଓ ଗୌରୀ ମନ୍ଦିର ଯଥାକ୍ରମେ ଭୌମକର ବଂଶୀୟ । ମୋହିନୀ ମହାଦେବୀ ଓ ଗୌରୀ ମହାଦେବୀ, ପ୍ରାଚୀନ କଳିଙ୍ଗ ନଗର ବା ଆଧୁନିକ ମୁଖଲିଙ୍ଗର ପ୍ରସିଦ୍ଧ ମଧୁକେଶ୍ୱର ମନ୍ଦିର ଓ ସୋମେଶ୍ୱର

ମନ୍ଦିର ଯଥାକ୍ରମେ ଗଙ୍ଗବଂଶୀୟ ମଧୁକାମାର୍ଣ୍ଣବ ଦେବ ଓ ଅନନ୍ତ ବର୍ମଦେବ, ବିରଜା କ୍ଷେତ୍ରସ୍ଥ ମାଧବେଶ୍ୱର ମନ୍ଦିର ଭୌମବଂଶୀୟା ମାଧବୀ ଦେବୀ ନିର୍ମାଣ କରିଥିବା ପ୍ରାଚୀନ ଅଭିଲେଖମାନଙ୍କରୁ ଜଣାଯାଏ । ସେହିପରି ପ୍ରସିଦ୍ଧ ଚଣ୍ଡୀହରଦେବ ଉକ୍ତ ଚଣ୍ଡୀଶ୍ୱର ବା ଚଣ୍ଡେଶ୍ୱର ମନ୍ଦିର ପ୍ରତିଷ୍ଠା କରିଥିଲେ । ବକୁଳ, ଚମ୍ପକ; ନାଗେଶ୍ୱର ବୃକ୍ଷ ମଣ୍ଡିତ ଏକଦା ପ୍ରସିଦ୍ଧ କେଦାର କ୍ଷେତ୍ରର ଗୌରବ ପ୍ରଖ୍ୟାପନ ପାଇଁ ଅତୀତରେ ଉକ୍ତ 'କେଦାର ମାହାତ୍ମ୍ୟ' ଗ୍ରନ୍ଥ ବର୍ତ୍ତମାନ ଅଜ୍ଞାତନାମା କୌଣସି ପଣ୍ଡିତଙ୍କ ଦ୍ୱାରା ରଚିତ ହୋଇଥିଲା । ଉକ୍ତ କ୍ଷେତ୍ର ନିବାସୀ ଶ୍ରୀମାନ୍ ମୃତ୍ୟୁଞ୍ଜୟ ମହାପାତ୍ର ଗତ ପଚାଶବର୍ଷ ହେଲା ଉକ୍ତ ଗ୍ରନ୍ଥ ପ୍ରକାଶ କରିବାପାଇଁ ଯତ୍ନବାନ୍ ଥିବାର ମୋତେ ଭଲରୂପେ ଜଣା । ମୁଁ ପୂର୍ବତନ କଳାହାଣ୍ଡି ଦେଶୀୟ ରାଜ୍ୟରେ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟକ୍ଷ ଥିବା ସମୟରେ ସେ ଉକ୍ତ ଗ୍ରନ୍ଥ ପ୍ରକାଶପାଇଁ ମୋ ନିକଟକୁ ପଠାଇଥିଲେ । ଭବାନୀପାଟଣା ହାଇସ୍କୁଲର ପ୍ରଧାନ ପଣ୍ଡିତ ଶ୍ରୀ ଗଣେଶ୍ୱର ରଥ ଶର୍ମା ଉକ୍ତ ଗ୍ରନ୍ଥର ପାଣ୍ଡୁଲିପିଟି ଆମୂଳଚୂଳ ସଂଶୋଧନ କରି ତାଙ୍କୁ ଏହି ମହତକାର୍ଯ୍ୟରେ ଉତ୍ସାହିତ କରିଥିଲେ । କିନ୍ତୁ କେତେକ ଅସୁବିଧା ଯୋଗୁଁ ଉକ୍ତ ଗ୍ରନ୍ଥ ସେ ସମୟରେ ମୁଦ୍ରିତ ଓ ପ୍ରକାଶିତ ହୋଇ ପାରି ନ ଥିଲା । ଓଡ଼ିଆ ଭାଗବତକାର ମହାତ୍ମା ଜଗନ୍ନାଥଙ୍କ ଅମରବାଣୀ—

"ଏମନ ଭାବୁଥାଇ ଯାହା
କାଳେ ପ୍ରାପତ ହୁଏ ତାହା"ର ସତ୍ୟତା

ଆଜି ଏ ଗ୍ରନ୍ଥ ପ୍ରକାଶରେ ପ୍ରତିପାଦିତ ହୋଇଛି । ଏ ଗ୍ରନ୍ଥ ପ୍ରକାଶ ଦ୍ୱାରା ଶ୍ରୀମାନ୍ ମୃତ୍ୟୁଞ୍ଜୟ ଓ ଚଣ୍ଡେଶ୍ୱର ମନ୍ଦିର ଜୀର୍ଣ୍ଣୋଦ୍ଧାର

ସମିତିର ଅନ୍ୟ ଉତ୍ସାହୀ ସଭ୍ୟମାନେ ସଂସ୍କୃତ ପୁରାଣ ଭଣ୍ଡାରକୁ ଏକ ଅମୂଲ୍ୟ ରତ୍ନ ଦାନ କରିଛନ୍ତି । ତେଣୁ ସେମାନେ ପ୍ରଶଂସାର ପାତ୍ର । ଏହି ଗ୍ରନ୍ଥ ପାଠ କରି ସୁଧୀ ସମାଜ, ବଦାନ୍ୟ ବ୍ୟକ୍ତିବୃନ୍ଦ ତଥା ବିଭିନ୍ନ ସରକାରୀ ସଂସ୍ଥା ଉକ୍ତ ଚଣ୍ଡେଶ୍ୱର ମନ୍ଦିର ଜୀର୍ଣ୍ଣୋଦ୍ଧାର କାର୍ଯ୍ୟରେ ଯଥାଶକ୍ତି ସାହାଯ୍ୟ ପ୍ରଦାନ କଲେ ଗ୍ରନ୍ଥ ପ୍ରକାଶକ ବୃନ୍ଦଙ୍କର ଲକ୍ଷ୍ୟ ପୂର୍ଣ୍ଣ ହେବ । ଏହି ପୌରାଣିକ ମାହାତ୍ମ୍ୟଗ୍ରନ୍ଥ ସହିତ ଚଣ୍ଡେଶ୍ୱରର ଇତିହାସ ମଧ୍ୟ ପ୍ରକାଶିତ ହୋଇଥିବାରୁ ମଣି-କାଞ୍ଚନ ସଂଯୋଗ ହୋଇଛି । ଆଉ ମଧ୍ୟ ଗ୍ରନ୍ଥଟି ବହୁଚିତ୍ର ସମ୍ବଳିତ ହୋଇଥିବାରୁ ଏହାର ସୌଷ୍ଠବ ଓ ଉପାଦେୟତା ଯଥେଷ୍ଟ ବୃଦ୍ଧିପ୍ରାପ୍ତ ହୋଇଛି । ସେମାନଙ୍କ ସାଧୁ ଅଭିଳାଷ ପୂର୍ଣ୍ଣ ହେଉ ଏହାହିଁ ମଙ୍ଗଳମୟ ଭଗବାନଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ।

ଭୁବନେଶ୍ୱର,
ଶିବରାତ୍ରି,
ତା ୧୨-୨-୧୯୬୧

ଜୀର୍ଣ୍ଣୋଦ୍ଧାର ସମିତିର
ଚିର ଶୁଭାଭିଳାଷୀ
**ଶ୍ରୀ କେଦାରନାଥ ମହାପାତ୍ର**



# କେଶରୀ-କ୍ଷେତ୍ର ବିବରଣୀ

ଓଁ

ଶ୍ରୀ ଚଣ୍ଡେଶ୍ୱରାୟ ନମଃ

ପ୍ରିୟ ଦେବଭକ୍ତ ଭାଇ ଓ ଭଉଣୀମାନେ,

ଆପଣମାନେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ କଥା ଅଳ୍ପ ଅଧିକେ ଶୁଣିଥିବେ । ଶ୍ରୀ ଚଣ୍ଡେଶ୍ୱର ଦେବ ପୁରୀ ଜିଲ୍ଲା ଖୋରଧା ସବ୍‌ଡିଭିଜନ ଅନ୍ତର୍ଗତ ଟାଙ୍ଗି ଥାନା ଚଣ୍ଡେଶ୍ୱର ଗ୍ରାମରେ ବିଦ୍ୟମାନ । ବର୍ତ୍ତମାନ ଏହି ମହାପ୍ରଭୁଙ୍କର ପ୍ରାଚୀନ ମନ୍ଦିରଟି ଭାଙ୍ଗି ପଡ଼ିଅଛି । ଉକ୍ତ ଠାକୁରଙ୍କ ମନ୍ଦିରଟି ପୁନରାୟ ନିର୍ମାଣ କରିବାପାଇଁ କେତେକ ଧର୍ମପ୍ରାଣ ବ୍ୟକ୍ତି ଗୋଟିଏ କମିଟି ଗଠନକରି ସର୍ବ ସାଧାରଣଙ୍କ ଅବଗତି ନିମିତ୍ତ ଓ ଭିକ୍ଷାପାଇଁ ଆବେଦନ ପତ୍ରମାନ ପ୍ରଚାର କରି- ଅଛନ୍ତି । ଆମ୍ଭେ ମଧ୍ୟ ସେହି କମିଟିର ଜଣେ ସାଧାରଣ ସଭ୍ୟ ଅଟୁ ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ପରି ଓଡ଼ିଶାର ଶତ ଶତ ମଠ ମନ୍ଦିର କାଳର କରାଳକବଳରେ ଭାଙ୍ଗିପଡ଼ି ଧ୍ୱଂସ ସ୍ତୁପରେ ପରିଣତ ହୋଇଅଛି । ପୁଣ୍ୟଭୂମି ଭାରତବର୍ଷରେ ହିନ୍ଦୁ ରାଜତ୍ୱ କାଳରେ ନିର୍ମିତ ଶତ ଶତ ମଠ, ମନ୍ଦିର, ପ୍ରାସାଦ ଓ ଗୋପୁର ପ୍ରଭୃତ ବିଜାତୀୟ ଲୁଣ୍ଠନ ପ୍ରିୟ ବିଧର୍ମୀମାନଙ୍କ ଶାସନ- କାଳରେ ଧ୍ୱସ୍ତବିଧ୍ୱସ୍ତ ହୋଇଅଛି ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିରଟି ବହୁ ପ୍ରାଚୀନ ବୋଲି ମନ୍ଦିରର କଳା ଓ ତାର ଧ୍ୱଂସାବଶେଷକୁ ଦେଖିଲେ ସ୍ପଷ୍ଟ ଅନୁମିତ ହୁଏ ।

ଗଙ୍ଗବଂଶୀ ଦୀଙ୍କରେ ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ଅଟେନେକଜାଣ୍ଡାର କନିଙ୍ଗହାମ ୧୮୭୫ ରେ ଏହି ମନ୍ଦିରର କାରୁକାର୍ଯ୍ୟରେ ବିମୁଗ୍ଧ ହୋଇ ପ୍ରଥମେ ତାଙ୍କର ପ୍ରତ୍ନତାତ୍ତ୍ୱିକ ବିବରଣ ପୁସ୍ତକରେ ଏହାର ଏକ ଅତି ସଂକ୍ଷିପ୍ତ ବର୍ଣ୍ଣନା ପ୍ରକାଶ କରିଥିଲେ ହେଁ ହେଁ ତଥା ଉତ୍କଳୀୟ କୌଣସି ଐତିହାସିକଙ୍କ ଦୃଷ୍ଟି ବର୍ତ୍ତମାନ ପର୍ଯ୍ୟନ୍ତ ଏଥିପ୍ରତି ଆକୃଷ୍ଟ ହୋଇ ନଥିଲା । ଏହାର କାରଣ ହୁଏତ ହୋଇ ପାରିଥାଏ, ଚଣ୍ଡେଶ୍ୱର ଗୋଟିଏ ପଲ୍ଲୀଗାଁ, ମନ୍ଦିର ଚତୁପାର୍ଶ୍ୱରେ ଆମ୍ବ, ବକୁଳ, ଚମ୍ପକ, ନାଗେଶ୍ୱର, ପଣସ ଆଦି ବହୁ ବୃକ୍ଷ ଲତାରେ ସ୍ଥାନଟି ନିଘଞ୍ଚ ଥିବାରୁ ସମ୍ଭବତଃ ଇତିହାସ ଲେଖକଙ୍କ ଦୃଷ୍ଟିରେ ଏହି ସ୍ଥାନଟି ପଡ଼ି ପାରି ନଥିବ । ଚଣ୍ଡେଶ୍ୱର ଦେବଙ୍କର ସରଳ ସଂସ୍କୃତରେ ଲିଖିତ 'କେଦାର ମାହାତ୍ମ୍ୟ' ନାମକ ଏକ ପ୍ରାଚୀନ ପୁସ୍ତକ ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ଥିଲା । ବର୍ତ୍ତମାନ ଚଣ୍ଡେଶ୍ୱର ଜୀର୍ଣ୍ଣସଂସ୍କାର କମିଟି ତରଫରୁ ଏହା ମୁଦ୍ରିତ ଓ ପ୍ରକାଶିତ ହୋଇଅଛି । ପରମ ଶିବଭକ୍ତ ମହର୍ଷି ଚଣ୍ଡି ଓ ଦେବର୍ଷି ବାମଦେବଙ୍କ ସହ ସାକ୍ଷାତ ସମୟରେ ସଚ୍ଚିଦାନନ୍ଦ ଶିବଙ୍କର ଅପ୍ରକଟିତ ପରମ ଶାନ୍ତିପ୍ରଦ ସ୍ଥାନ ସମ୍ବନ୍ଧେ ଆଲୋଚନା କରାଯାଇ ଏହି ରମଣୀୟ କେଦାର ବନର ମାହାତ୍ମ୍ୟ ଈଶ୍ୱର ଓ ପାର୍ବତୀଙ୍କ କଥୋପକଥନ ଛଳରେ ପ୍ରକାଶିତ ହୋଇଅଛି । କେଦାର ବନର ସ୍ଥାନ ନିରୂପଣ ସମ୍ବନ୍ଧରେ ଲେଖା ହୋଇଛି—

"ଉତ୍କଳେ ଲବଣାମ୍ଭୋଧେ ତଟେସ୍ମିନ୍ ନୀଳକନ୍ଦରେ
ଭବାନ୍ତେ ଶ୍ରୀଜଗନ୍ନାଥଃ କଳୌ କୈବଲ୍ୟ ଦାୟକଃ ।"

ଉତ୍କଳରେ ଲବଣ ସମୁଦ୍ର ବେଳା ନିକଟବର୍ତ୍ତୀ ନୀଳ ଭୂଧରରେ ବିରାଜିତ ଶ୍ରୀ ଜଗନ୍ନାଥ ଦେବ କଳିଯୁଗର କୈବଲ୍ୟ

ଦାୟକ ଅଛନ୍ତି । ସେହି ମାଲଟୈଳର ପଶ୍ଚିମରେ ଅଢ଼େଇ ଯୋଜନ ଦୂରରେ କୌସୁମ୍ଭୀ ନାମକ ଏକ ନଦୀ ଝରରେ କେଶରବନ ଅବସ୍ଥିତ । ଏହି ନଦୀର ନାମ ବର୍ତ୍ତମାନ କୁସୁମୀ ନଦୀ ଏବଂ ଏହା ଧାମା ପାହାଡ଼ରୁ ଉତ୍ପନ୍ନ ହୋଇଅଛି ।

"କୌସୁମ୍ଭୀ ନାମ ନଦ୍ୟାସ୍ତେ ଝଞ୍ଜାଭୂଧରସମ୍ଭବା"
ସ୍ନାନଂ ଯେ ତତ୍ର କୁର୍ବନ୍ତି ମୁକ୍ତିଭାଜୋ ଭବନ୍ତିତେ
କାର୍ତ୍ତିକପୌର୍ଣ୍ଣମାସ୍ୟାଂ ତୁ ବିଶେଷେଣ ଫଳପ୍ରଦା"

(କେଶର ମାହାତ୍ମ୍ୟ)

ଏହି ପୁଣ୍ୟତୋୟା ନଦୀରେ ଯେଉଁ ବ୍ୟକ୍ତି ସ୍ନାନ କରନ୍ତି ସେମାନେ ସର୍ବ ପାପରୁ ନିଷ୍କୃତି ଲାଭ କରନ୍ତି । ବିଶେଷତଃ କାର୍ତ୍ତିକ ପୂର୍ଣ୍ଣିମାରେ ସ୍ନାନ କଲେ ଅଶେଷ ପୁଣ୍ୟ ଲାଭ ହୁଏ । ଏହି ପୁଣ୍ୟ-ପ୍ରଦା ନଦୀର ଦକ୍ଷିଣ ପାର୍ଶ୍ବରେ ରମଣୀୟ କେଶରବନ ଅବସ୍ଥିତ । ଏହି ବନଟି ନାନାପ୍ରକାର ଫଳପୁଷ୍ପାଦି ଓ ନାନାବିଧ ବନଜୀବ ଆଦିରେ ପୂର୍ଣ୍ଣ ଥାଇ ଅତି ମନୋହର ଓ ରମଣୀୟ ଥିବା ପାର୍ବତୀଙ୍କୁ ଈଶ୍ବର ବୁଝାଇଅଛନ୍ତି ।

"ତତ୍ର ଚଣ୍ଡୀଶ୍ବରୋ ନାମ ମମଲିଙ୍ଗଂ ପ୍ରତିଷ୍ଠିତଂ"

ତହିଁରେ ମୋର ପ୍ରିୟତମ ଚଣ୍ଡୀଶ୍ବର ନାମକ ଲିଙ୍ଗ ବିରାଜ-ମାନ କରି ଅଛନ୍ତି, ଏବଂ ତାଙ୍କୁ ଦର୍ଶନ କଲେ ଲୋକ ସର୍ବ ପାପରୁ ମୁକ୍ତ ହୁଏ ।

"ଚଣ୍ଡୀଶ୍ବରାଖ୍ୟଂ ମଲ୍ଲିଙ୍ଗ ଦୃଷ୍ଟ୍ବାତୁଯୋ ନରୋତ୍ତମ ।
ସର୍ବପାପ ବିନିର୍ମୁକ୍ତୋ ଶିବଲୋକେ ମହୀୟତେ ।"

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଈଶାନ୍ୟରେ କାଳୀହରେଶ୍ୱର ପଛପଟରେ ଦୁଇମୂର୍ତ୍ତି ଯୁଗ୍ମ ଲିଙ୍ଗ ହରିହର ଏବଂ ଅଗ୍ରଭାଗରେ ଦୁଇ ମୂର୍ତ୍ତି ଲିଙ୍ଗ ଗୌରୀହର ନାମରେ ପ୍ରତିଷ୍ଠିତ ଅଛନ୍ତି । ଦକ୍ଷିଣ ପାର୍ଶ୍ୱରେ ଗୋମୁକ୍ତେଶ୍ୱର ନାମକ ଲିଙ୍ଗ ବିଦ୍ୟମାନ, ଗୋମୁକ୍ତେଶ୍ୱରଙ୍କ ଉତ୍ତର ଭାଗକୁ ଅନନ୍ତେଶ୍ୱର, ପୂର୍ବ ପଟରେ ଗଙ୍ଗେଶ୍ୱର, ଅଗ୍ନିକୋଣରେ ସଙ୍ଗମେଶ୍ୱର, ସଙ୍ଗମେଶ୍ୱରଙ୍କ ଅଗ୍ରଦେଶରେ ନୀଳକଣ୍ଠେଶ୍ୱର, ନୀଳକଣ୍ଠେଶ୍ୱରଙ୍କ ଅଗ୍ର ଭାଗରେ ଦକ୍ଷେଶ୍ୱର ଓ ସଙ୍ଗମେଶ୍ୱରଙ୍କ ଅଗ୍ରଭାଗରେ ଅଧିଷ୍ଠିତ ଲିଙ୍ଗ ଯମେଶ୍ୱର, ଯମେଶ୍ୱରଙ୍କ ପାର୍ଶ୍ୱଭାଗରେ ଧନେଶ୍ୱର, ଧନେଶ୍ୱରଙ୍କର ଦକ୍ଷିଣ ଭାଗରେ ହେମେଶ୍ୱର ବିଦ୍ୟମାନ ଥାଇ ଶ୍ରୀ ଚଣ୍ଡେଶ୍ୱର ଓ ଅନନ୍ତେଶ୍ୱରଙ୍କ ମଧ୍ୟ ଭାଗରେ ସିଦ୍ଧେଶ୍ୱର ନାମକ ତ୍ରୟୋଦଶ ଲିଙ୍ଗ ପ୍ରତିଷ୍ଠିତ ଅଛନ୍ତି । କେଉଁରେ କ୍ଷେତ୍ରରେ ଚଣ୍ଡେଶ୍ୱରଙ୍କ ସମେତ ଚତୁର୍ଦ୍ଦଶ ଶିବ ଲିଙ୍ଗ ଓ ମନ୍ଦିର ପ୍ରତିଷ୍ଠିତ ଅଛି । ଏତଦ୍‌ବ୍ୟତୀତ ଶ୍ରୀ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଅଗ୍ରଭାଗରେ ଅଷ୍ଟଭୂଜା ଦୁର୍ଗା ଦେବୀଙ୍କ ମନ୍ଦିର, ଶ୍ରୀ ଶ୍ରୀ ନରସିଂହ ଦେବଙ୍କ ବିଷ୍ଣୁ ମନ୍ଦିର, କେଉଁରେ ପୀଠର ପୀଠପାଳ ଶ୍ରୀ ଲକ୍ଷ୍ମୀନାରାୟଣ ଦେବଙ୍କ ମନ୍ଦିର, ପ୍ରତିଷ୍ଠିତ ଥିବାରୁ ଉକ୍ତ କ୍ଷେତ୍ରଟି ହରିହର କ୍ଷେତ୍ରରେ ପରିଣତ ହୋଇଅଛି । ଏହି କେଉଁରେ ପୀଠର ପୀଠପାଳ ଶ୍ରୀ ଲକ୍ଷ୍ମୀ ନାରାୟଣ ।

ଏହି ପୀଠର ଦର୍ଶନକ୍ରମ ରଣପୁରର ସୁପରିଚିତ ଅଗାଧୁ କବିଚନ୍ଦ୍ର ମହାଶୟ ସ୍ୱ ୧୯୪୮ କାର୍ତ୍ତିକ ପୂର୍ଣ୍ଣିମା ମେଳା ଗୀତରେ ଲେଖିଅଛନ୍ତି ।

ପରମ ଶିବ ଭକ୍ତ ବାଣାସୁର ଶିବଙ୍କ ପ୍ରସାଦରେ ବହୁ ଶିବ ଲିଙ୍ଗ ପ୍ରତିଷ୍ଠା କରିଥିବା ପ୍ରବାଦ ଅଛି । ବାଣାସୁରଙ୍କର ରହିବା

ଗଡ଼ (ଜଅସ) ଶୋଣପୁର ଅଳକା ସୋରଣ ଗଡ଼ରେ ଥିବା ପ୍ରବାଦ ଅଛି । ଏକଦା ଶିବ-ଭକ୍ତ-ଦୈତ୍ୟପୂଣ ବାଣାସୁର ଭକ୍ତି ସହ ଶ୍ରୀ ଶ୍ରୀ ଚନ୍ଦ୍ରେଶ୍ୱରଙ୍କୁ ଆରାଧନା କରିଥିବାରେ ଦେବ ଦେବ ଚଣ୍ଡୀଶ୍ୱର ପ୍ରସନ୍ନ ହୋଇ ବାଣାସୁରର ମନର ଅଭୀଷ୍ଟ ବ୍ୟକ୍ତ କରିବାକୁ ଆଜ୍ଞା ପ୍ରଦାନ କରିଥିଲେ । ପରମ ଭକ୍ତ ବାଣାସୁର ଚଣ୍ଡୀଶ୍ୱରଙ୍କ ବରଦାନରେ ଖୁସି ହୋଇ ଶ୍ରୀ ଚଣ୍ଡୀଙ୍କୁ ସପାରିଷଦ ସ୍ୱଗୃହକୁ ବିରାଜମାନ କରିବାକୁ ନିବେଦନ କରିଥିଲେ । ତଦନୁଯାୟୀ ଭକ୍ତ-ବତ୍ସଳ ଆଶୁତୋଷ ଶ୍ରୀ ହଣ୍ଡୀହର ଦେବ ବାଣାସୁରଙ୍କର ମନର ଅଭୀଷ୍ଟ ପୂରଣ କରିଥିବା କଥା କେଶରେ ମାହାତ୍ମ୍ୟରେ ବର୍ଣ୍ଣିତ ଅଛି ।

(ଚନ୍ଦ୍ରେଶ୍ୱର ଉବାଚ)

"ଶୃଣୁବାଣ ବକ୍ଷ୍ୟାମ୍ୟାକଂ ତ୍ୱଂ ହି ଭକ୍ତ ମମ ପ୍ରିୟଃ ।
ନାଲଭ୍ୟୋ ମମଭକ୍ତାନାଂ ତଥାପି ବ୍ରୂହିତାଂ ବରଃ ।"

(ବାଣ ଉବାଚ)

"ଯଦି ପ୍ରସନ୍ନ ଦେବେଶ ବରଦୋ ଯଦିବୈ ଭବାନ୍
ତଦା ମମ ପୁରେ ନିତ୍ୟଂ ତିଷ୍ଠତ୍ୱଂ ସପରିଷଦଃ ।"

"କେଶରେ ମାହାତ୍ମ୍ୟ ପୁସ୍ତକରେ କେଶରବନରେ ପ୍ରତିଷ୍ଠିତ ଦେବାଦେବୀଙ୍କର ମହାତ୍ମ୍ୟ ଓ ଦର୍ଶନ କ୍ରମ ଏବଂ ଶ୍ରୀଚନ୍ଦ୍ରେଶ୍ୱର ଦେବଙ୍କ ସମ୍ମୁଖ ଭାଗରେ ଥିବା ପୁଣ୍ୟତୋୟା କାଳୀହ୍ରଦ ନାମକ ପୁଷ୍କରଣୀରେ ସ୍ନାନର ମହାତ୍ମ୍ୟ ବହୁଳ ଭାବରେ ପ୍ରଚାରିତ ହୋଇଅଛି । ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ମନ୍ଦିର ନିର୍ମାଣ ଇତିହାସ ଏଥିରେ ନାହିଁ । ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ର ଏହି ମନ୍ଦିରର ଏକ ସଂକ୍ଷିପ୍ତ ଇତିହାସ କେତେ ବର୍ଷ ପୂର୍ବେ ଦୈନିକ

ସମାଜ ପତ୍ରିକାରେ ପ୍ରକାଶ କରିଥିଲେ । ତାଙ୍କର ମତାନୁଯାୟୀ ଶ୍ରୀ ଚଣ୍ଡେଶ୍ୱର ଦେବ ପୁରୀ ଜିଲ୍ଲାରେ ଅବସ୍ଥିତ ପ୍ରସିଦ୍ଧ ଅଷ୍ଟଶମ୍ଭୁଙ୍କ ମଧ୍ୟରେ ଏକତମ ଏବଂ ସୋମ ବା କେଶରୀବଂଶୀୟ ପ୍ରବଳ ପରାକ୍ରାନ୍ତ ବହୁ ରାଜ୍ୟ ବିଜେତା ଚଣ୍ଡୀହର ଦେବ ନାମରେ ପରିଚିତ ଦ୍ୱିତୀୟ ଯଯାତି ଏହି ମନ୍ଦିରଟି ନିର୍ମାଣ କରିଥିଲେ । ତାଙ୍କର ରାଜତ୍ୱ କାଳ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ । ସେ ସ୍ୱନାମକୁ ଚିର ସ୍ମରଣୀୟ କରିବା-ପାଇଁ ଏହି ଚଣ୍ଡୀହର ବା ଚଣ୍ଡୀଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ସ୍ୱର୍ଗତଃ ଦିଗମ୍ବର ଶ୍ରୀଚନ୍ଦନ ଭ୍ରମରବର ରାୟ "ଖୋରଧା ଦର୍ପଣ" ନାମକ ପୁସ୍ତକରେ ଖୋର୍ଦ୍ଧାଜିଲ୍ଲା ମଧ୍ୟରେ ଅବସ୍ଥିତ ପ୍ରଧାନ ପ୍ରଧାନ ରାଜ ପ୍ରତିଷ୍ଠିତ ଦେବାଦେବୀ, ପ୍ରଧାନ ରାସ୍ତା, ପ୍ରଧାନ ନଦୀ ଆଦି ସମ୍ବନ୍ଧରେ ବହୁ ଜ୍ଞାତବ୍ୟ ବିଷୟ ସଂଗ୍ରହକରି ପଦ୍ୟ ଆକାରରେ ପ୍ରକାଶ କରିଥିଲେ । ଖୋରଧା ଜିଲା ମଧ୍ୟରେ ଶ୍ରୀ ଚଣ୍ଡେଶ୍ୱର ଦେବ ପ୍ରାଚୀନତମ ବୋଲି ଲେଖିଛନ୍ତି । ମାତ୍ର ମନ୍ଦିରଟି କେଉଁ ରାଜାଙ୍କ ସମୟରେ କରା ଯାଇଥିଲା ତାହା ଲେଖି ନାହାନ୍ତି । ମୋର ବାଲ୍ୟବନ୍ଧୁ ଜଟପଡ଼ା ଗଡ଼ର ଶ୍ରୀମାନ୍ ନାରଣ ବନ୍ଧୁ ପଟ୍ଟନାୟକ ତାଙ୍କର ଯୁବାବସ୍ଥାରେ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ସମ୍ବନ୍ଧୀୟ କେତେକ କିମ୍ବଦନ୍ତୀ, ମନ୍ଦିରଟିର କେତେକ ଫଟୋ ଆଦି ସଂଗ୍ରହ କରିଥିଲେ ।

ମନ୍ଦିରଟି ଜରାଜୀର୍ଣ୍ଣ ହୋଇଯିବାରୁ ଏହାର ମରାମତିପାଇଁ ମୋର ଜ୍ୟେଷ୍ଠ ପିତା ଚଣ୍ଡେଶ୍ୱର ମହାପାତ୍ରଙ୍କ ଜୀବିତାବସ୍ଥାରେ ଦଗିଡ ପଡ଼ାର ଫରେଷ୍ଟ ଗାର୍ଡ଼ ଯୋଗିନାଥ ଦାସ ନାମକ ଭଦ୍ର ବ୍ୟକ୍ତିଙ୍କ ଉଦ୍‌ଯୋଗରେ ଗୋଟିଏ ଶ୍ରୀ ଚଣ୍ଡେଶ୍ୱର ଦେବ ମନ୍ଦିର ଜୀର୍ଣ୍ଣ ସଂସ୍କାର କମିଟି ଗଢ଼ାଯାଇ ଥିଲା ଓ ସେହି ସଭାରେ ସଭାପତି ରୂପେ ଚଣ୍ଡେଶ୍ୱର ମହାପାତ୍ର, ଉପସଭାପତି ଓ କୋଷାଧ୍ୟକ୍ଷ ହିସେବ

ମନ୍ଦରର ନାବାଲଗ ପୁଅ ମଦନମୋହନ ପଟ୍ଟନାୟକ, କୁଦ୍ଦଣ୍ଡି ଗୋପାଳ ପ୍ରସାଦ ମୌଜାଙ୍କ ଅଭିଭାବକ ସୂତ୍ରେ ଭଗବାନ ପଟ୍ଟନାୟକ ଓ ହରିପୁର ଚଣ୍ଡେଶ୍ୱର ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କରୁ କେତେକ ସଭ୍ୟଙ୍କୁ ରଖା ଯାଇଥିଲା । ଏହାର ଉଦ୍ୟମକ୍ରମେ ଠାକୁରଙ୍କ କେତେଗୋଟି ମେଲା ଓ ନାନା ଅଳଙ୍କାର ଓ ଅଜ ମଧ୍ୟ କେତେକ ଗ୍ରାମରୁ ମନ୍ଦିର ମରାମତି ପାଇଁ ଚାନ୍ଦା ସଂଗୃହୀତ ହୋଇ-ଥିଲା । ଆମ୍ଭେ ମଧ୍ୟ ଛାତ୍ର ଜୀବନରେ ମନ୍ଦିର ଦ୍ୱାର ଠାରେ ଚାନ୍ଦା ସଂଗ୍ରହ କାର୍ଯ୍ୟରେ କେତେକ ଦିନ କାର୍ଯ୍ୟ କରିଥିଲୁ । ଉକ୍ତ ଚାନ୍ଦା ବାବଦ ସଂଗୃହୀତ ଧନ କୋଷାଧ୍ୟକ୍ଷ ଓ କେତେକ ଗ୍ରାମର ପ୍ରଧାନ ପ୍ରଧାନ ଲୋକଙ୍କ ମାରଫତରେ ରହିଥିଲା । ଉଦ୍ୟୋକ୍ତା ସରକାରୀ ଚାକିରି କରୁଥିବାରୁ ତାଙ୍କର ବଦଳି ଓ ସଭାପତି ଉପସଭାପତି ଓ କୋଷାଧ୍ୟକ୍ଷଙ୍କର ବିୟୋଗ ପରେ ଉକ୍ତ କମିଟି ଭାଙ୍ଗିଗଲା ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଦୈନିକ ସେବା ଉପଲକ୍ଷେ ପ୍ରାପ୍ତ ଏ ୨୭୦ ଏକର ଜମି ଖଞ୍ଜା ଅଛି । ଉକ୍ତ ଜମିମାନ ଖୋର୍ଦ୍ଧା ଖାସ-ମାହାଲର ବିଭିନ୍ନ ମୌଜାରେ ଅବସ୍ଥିତ । ପ୍ରବାଦ ଅଛି ଉକ୍ତ ଜମିମାନ କୁଦ୍ଦଣ୍ଡୀ ଗଡ଼ରେ ଥିବା ହରିଚନ୍ଦନ ବଂଶର ରାଜାମାନେ ଠାକୁରଙ୍କ ନୀତି ପାଇଁ ଖଞ୍ଜିଥିଲେ ଓ ଠାକୁରଙ୍କ ସେବା ଆଦି କାର୍ଯ୍ୟରେ ଅନ୍ୟ ବ୍ରାହ୍ମଣମାନେ ନିଯୁକ୍ତ ଥିଲେ । କାଳର କରାଳଚକ୍ରରେ ଉକ୍ତ ବ୍ରାହ୍ମଣମାନେ ନାନାପ୍ରକାର ରୋଗରେ ପଡ଼ି ଅଧିକାଂଶ ମୃତ୍ୟୁ ମୁଖରେ ପଡ଼ିଯିବାରୁ ଅବଶିଷ୍ଟ ବଂଶଧରମାନେ ଏଠାରୁ ପଳାଇଲେ । ତେଣୁ ରାଜା ବର୍ତ୍ତମାନ ଚଣ୍ଡେଶ୍ୱର ଗ୍ରାମରେ ବସବାସ କରୁଥିବା ବ୍ରାହ୍ମଣ, ସୁଆର, ମାଳୀ, ଗୁଡ଼ିଆ, ଭଣ୍ଡାରୀ କେୟାତଣ, ଗୋପାଳ ଆଦି ନିଯୋଗୀମାନଙ୍କୁ ବସବାସର ସୁବିଧା

କର ଠାକୁରଙ୍କ କାର୍ଯ୍ୟର ଦାୟିତ୍ୱ ଦେଇଥିଲେ । କାଳକ୍ରମେ ଉକ୍ତ ରାଜବଂଶ କୁଦ୍ଧୁଡ଼ୀ ଗଡ଼ରୁ ଚାଲିଯିବାରୁ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଦାୟିତ୍ୱ ଚଣ୍ଡେଶ୍ୱର ପ୍ରଧାନ ମାଳୀ ସେବକ ରାମକୃଷ୍ଣ ମହାପାତ୍ରଙ୍କ ଉପରେ ନ୍ୟସ୍ତ ରହିଲା । ସେତେବେଳକୁ ଖୋର୍ଦ୍ଧାର ରାଜବଂଶମାନେ ଇଂରେଜଙ୍କ ସଙ୍ଗେ ଲଢ଼ାଇ କରି ପରାସ୍ତ ହୋଇଯିବାରେ ଇଂରେଜ ସରକାର ଖୋର୍ଦ୍ଧାକୁ ତାଂକ କର୍ତ୍ତୃତ୍ୱାଧୀନରେ ରଖି ବନ୍ଦୋବସ୍ତ କରାଇଥିଲେ । ରାଜଦଣ୍ଡ ଠାକୁର ଜମି ପକ୍ଷେ ସୁଗମ ଖଜଣା ଟଙ୍କି ସୂତ୍ରେ ଧାର୍ଯ୍ୟ କରାଯାଇ ଥିଲା । ପ୍ରବାଦ ଅଛି ସେହି ମାଳୀ ସେବକ ମଧ୍ୟ ଚଣ୍ଡେଶ୍ୱର ମୌଜା ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ପାଇଁ ଟ ୬୦୯ ଙ୍କା ମାତ୍ର ଟଙ୍କି ଇଂରେଜ ସରକାରଙ୍କୁ ଦାଖଲ କରୁଥିଲେ । ଠାକୁରଙ୍କ ପ୍ରତ୍ୟେକ ଭୂସମ୍ପତ୍ତି ତାଙ୍କର କର୍ତ୍ତୃତ୍ୱାଧୀନରେ ଥିଲା । କୌଣସି ସେବକ ଦୋଷ କଲେ ତାଙ୍କୁ ଚାକିରିରୁ କାଢ଼ି ଦିଆଯାଇ ତାହା ପାଖେ ଥିବା ଯାଏଗିରି ବା ଠାକୁରଙ୍କ ଚାଷ ଜମିକୁ ସେ ନିଜ ଦଖଲକୁ ନେଇଥିଲେ ଓ ଅନ୍ୟ ସେବକ ନିଯୁକ୍ତ କରି ପାରୁଥିଲେ । ମାତ୍ର ଖୋରଧା ବନ୍ଦୋବସ୍ତ କାର୍ଯ୍ୟ ଚାଲିବାରେ ମାର୍ଫତଦାରଙ୍କ ଅଧୀନେ ଥିବା ସେବାଯୁତ ଦଳର କେତେକ ସେବକମାନଙ୍କୁ ଦୋଷର ଶାସ୍ତି ସ୍ୱରୂପେ ମନ୍ଦିର ସେବା ଓ ଯାଗିରି ଜମିରୁ ଉଚ୍ଛେଦ କରାଯାଇ ଥିଲା । ମାତ୍ର ସେବକମାନେ ଏକତାବଦ୍ଧ ହୋଇ ବନ୍ଦୋବସ୍ତ ଅଫିସରଙ୍କ ନିକଟରେ ସେମାନେ ବଂଶପରମ୍ପରା କ୍ରମେ ଜମି ଚଷି ଓ ଜମି ଭୋଗି ଠାକୁରଙ୍କ କାର୍ଯ୍ୟ ଚଳାଇ ଆସୁଥିବା ସାକ୍ଷ୍ୟ ଦେଇ ଥିବାରେ ବନ୍ଦୋବସ୍ତ ଅଫିସର ଚାଷ କରୁଥିବା ଜମିପକ୍ଷେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ନାମ ସଙ୍ଗେ ୨ ଚାଷ କରୁଥିବା ବ୍ୟକ୍ତିଙ୍କୁ ସେବାୟିତ ସୂତ୍ରେ ସାମିଲ କରି ସେବକମାନଙ୍କ ପକ୍ଷେ ସେବାଯୁତ ସ୍ୱତ୍ୱ ସାବ୍ୟସ୍ତ କଲେ । ତଦନୁଯାୟୀ

ଯଦ୍ଓ କେତେଗୁଡ଼ଏ ଲୋକଙ୍କର ସୁବଧା ହେଲ ତେବେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ନୀତ ପରିଚାଳନାପକ୍ଷେ ଅତ୍ୟନ୍ତ ଅସୁବଧା ଘଟିଲ । ମାର୍ଫତଦାର ରାମକୃଷ୍ଣ ମହାପାତ୍ରଙ୍କ ଅଧୀନେ କେତେକ ନକଦ୍ଭୋଗ ଜମି ଓ ଆଉ କେତେକ ପ୍ରଜା ଭୋଗ ଜମି ଠାକୁରଙ୍କ ବାକେଯୁଲ, ପୁଷ୍କରଣୀ, ବଗାଏତ ଆଦ କେତେକ ସମ୍ପତ୍ତି ତାଙ୍କ ନକଟରେ ରହିଲ । ଠାକୁରଙ୍କ ଜମିମାନ ପ୍ରତ୍ୟେକ ସେବାୟିମାନଙ୍କ ଦଖଲ ଅନୁଯାୟୀ ପୃଥକ୍ ପୃଥକ୍ ଖାତା ହୋଇଯିବା ଓ ସେହ ଖାତାରେ ସେବକମାନଙ୍କଠାରେ ଯେଉଁ ସେବାପାଇଁ ଜମି ଭୋଗ କରନ୍ତି ସେପରି କଛି ରେକଡ଼ ନଥିବାରୁ ଓ ବହୁ ଲୋକଙ୍କ ନାମରେ ଜମି ସବୁ ବଭକ୍ତ ହୋଇଥିବାରୁ କାଳକ୍ରମେ ବଶୃଙ୍ଖଳା ଘଟିବା ସଙ୍ଗେ ସଙ୍ଗେ ଖୋରଧା ଖାସମାହାଲରେ ବାରମ୍ବାର ବନ୍ଦୋବସ୍ତ ହେବା ଦ୍ୱାରା କରବୃଦ୍ଧି ଓ ଭଳଭଳ ପ୍ରକାର ସ୍ୱତ୍ୱ ଓ ଉପସ୍ୱତ୍ୱ ଦ୍ୱାରା ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଖଞ୍ଜାଥିବା ଭୂସମ୍ପତ୍ତିମାନ ହାଇହାଗ ସୂତ୍ରେ ବଣ୍ଟନ ହୋଇଗଲ । ପରିଚାଳକ ମାର୍ଫତଦାରଙ୍କ କ୍ଷମତା ହ୍ରାସ ଓ ଆର୍ଥିକ ସ୍ୱଚ୍ଛଳତା କ୍ରମଶଃ କମିଯିବାରୁ ଚଣ୍ଡେଶ୍ୱର ମୌଜା ସରବରା-କାର୍ ଠିକ୍ ରାଜସ୍ୱ ଦାଖଲ ପକ୍ଷେ ପୂର୍ଣ୍ଣ ଅକ୍ଷମ ହୋଇ ସେତେବେଳେ ସରବରାକାରୀ ବକ୍ରୀ ଏବଂ ବଣ୍ଟନ ହୋଇ ପାରିବା ସୁବଧା ଥିବାରୁ ରାଜସ୍ୱ ଦେଣା ପାଇଁ ଚଣ୍ଡେଶ୍ୱର ମୌଜାର ଠିକାଦାର ସରବରାକାର ରାମକୃଷ୍ଣ ମହାପାତ୍ରଙ୍କ ପୁତ୍ର ତ୍ରିଲୋଚନ ମହାପାତ୍ର ଚଣ୍ଡେଶ୍ୱର ମୌଜା ନବାସୀ ଚଣ୍ଡେଶ୍ୱର ଦେବଙ୍କ ବ୍ରାହ୍ମଣ ସେବକ ବାଳକୃଷ୍ଣ ସାମନ୍ତରାୟଙ୍କୁ ଉକ୍ତ ସରବରାକାରୀ ସ୍ୱତ୍ୱ ହସ୍ତାନ୍ତର କରିଥିଲେ । କାଳର କୁଟିଳ ଗତରେ ଉକ୍ତ ମାର୍ଫତଦାରଙ୍କ ବଂଶଧରମାନେ ବେଳୁବେଳ ଦୁର୍ବଳ ହୋଇ ପଡ଼ିଥିବାରୁ ଶ୍ରୀଚଣ୍ଡେଶ୍ୱର ଦେବଙ୍କ ବାକେଯୁଲୀ ଆଦ ଖାତାମାନ ଯାହାକ ମାର୍ଫତଦାରଙ୍କ ଖାସ-ଦଖଲରେ ଥିଲ । ସେହ ଖାତାମାନଙ୍କରେ ଠିକ୍ ଖଜଣା ଆଦାୟ

ହୋଇ ପାରିଲା ନାହିଁ; ତେଣୁ ମୌଜାର ତତ୍‌କାଳୀନ ସରବରାକାରଙ୍କ ରିପୋର୍ଟକ୍ରମେ ଉକ୍ତ ବଡ଼େଜୁଲି ପୁଷ୍କରଣୀ ବଗାଏତ ଆଦି ଖାତାମାନ ସରକାର ତାଙ୍କ ତତ୍ତ୍ୱାବଧାନକୁ ନେଇ ଜିମାଦାର ସୂତ୍ରେ ମୌଜା ସରବରାକାର ବାଲକୃଷ୍ଣ ସାମନ୍ତରାୟଙ୍କ ଜିମାରେ ରହିବା ନିମିତ୍ତ ତା ୯-୧୨-୧୮୯୭ ମସିହା ଦ ୧୦୫ ନ ୧୩ ମ୍ବରରେ ରେଭିନ୍ୟୁ ବୋର୍ଡ଼ ଆଦେଶ ଦେଲେ । ବହୁକାଳବ୍ୟାପୀ ଉକ୍ତ ଠାକୁରଙ୍କ ବଡ଼େଜୁଲ ସରବରାକାରଙ୍କ ଅଧୀନରେ ରହିଥିଲେ ମଧ୍ୟ ମନ୍ଦିର ପ୍ରତି କେହି ଯତ୍ନ ନେଲେ ନାହିଁ । ଜମାଦାର ସରବରାକାର ତାଙ୍କ ଜିମାରେ ଥିବା ଜମିରେ ଧାର୍ଯ୍ୟ ଜେଣା ଆଦାୟ ଓ ସରକାରଙ୍କ ଠାରେ ଦାଖଲ କରି ତାଙ୍କର କର୍ତ୍ତବ୍ୟ ଶେଷ କରୁଥିଲେ । ତେଣୁ ମନ୍ଦିର ପରିଚାଳନାରେ ଏକ ଅରାଜକତା ସୃଷ୍ଟି ହେଲା ଓ ଯତ୍ନ ଅଭାବରୁ ମନ୍ଦିରରେ ଅନେକପ୍ରକାର ଜଙ୍ଗଲ ବୃକ୍ଷ (ବର, ଅଶ୍ୱତ୍ଥ ଇତ୍ୟାଦି) ଜନ୍ମି ମନ୍ଦିରଟି ପତନୋନ୍ମୁଖ ହେବା ପ୍ରବାଦ ଅଛି । ଇଂରେଜ ସରକାର ହିନ୍ଦୁ ଦେବଦେବୀ ମନ୍ଦିରମାନଙ୍କର ରକ୍ଷା ଏବଂ ମନ୍ଦିର, ଅଥବା ମଠ ଧନ ଅପବ୍ୟୟ ହେଲେ ତାହାର ଶୃଙ୍ଖଳା ନିମିତ୍ତ ଦେଓ୍ୱାନି କାର୍ଯ୍ୟ ବିଧି ଆଇନର ଧା ୫୩୯ ରୁ ଅନୁଯାୟୀ ଜିଲା ଜଜମାନଙ୍କୁ ଯଥେଷ୍ଟ କ୍ଷମତା ଦେଇଥିଲେ । ଯଦି କୌଣସି ମନ୍ଦିର ବା ମଠ ଅର୍ଥାତ୍ ସର୍ବସାଧାରଣ ଅନୁଷ୍ଠାନର ଧନ ଅପବ୍ୟୟ ହୋଇ ବିଶୃଙ୍ଖଳା ଘଟୁଥାଏ ହିନ୍ଦୁଧର୍ମାବଲମ୍ବୀ ସଦାଶୟ ବ୍ୟକ୍ତି ଅଳ୍ପ ମୂଲ୍ୟର କୋର୍ଟଫି ଦ୍ୱାରା ଜିଲା ଜଜଙ୍କ ନିକଟରେ ଆବେଦନପତ୍ର ଦେଲେ, ପ୍ରଥମେ ଜିଲା ଜଜ୍ ଉକ୍ତ ମଠ ବା ମନ୍ଦିର ଅବସ୍ଥା ତଦନ୍ତ କରି ସେହି ଧର୍ମର ସଦାଶୟ ଧର୍ମପ୍ରାଣ ଏକଜଣଙ୍କଠାରୁ ପାଞ୍ଚଜଣ ପର୍ଯ୍ୟନ୍ତ ପରିଚାଳକରୂପେ ନିଯୁକ୍ତ କରି ସେମାନଙ୍କ ହସ୍ତେ ଯଥେଷ୍ଟ

କ୍ଷମତା ଦେଉଥିଲେ । ପ୍ରତିବର୍ଷ ଉକ୍ତ ଅନୁଷ୍ଠାନର ଆୟ ବ୍ୟୟ ମଧ୍ୟ ବୁଝୁଥିଲେ ।

ଶ୍ରୀ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ପରିଚାଳନାରେ ବିଭ୍ରାଟ ଘଟିବାରୁ କୁମ୍ଭାରଗଡ଼ ନିବାସୀ କେତେକ ମୁଖ୍ୟ ଲୋକ ବଡ଼ପାଖି ଗଡ଼ର ପ୍ରଧାନ ଉଦ୍ୟୋକ୍ତା ଗଙ୍ଗାଧର ମାଲବିହାରଙ୍କ ନିର୍ଦ୍ଦେଶ କ୍ରମେ ଜିଲ ଜଜ୍‌ଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଶୁଣାଯାଏ ଯେ, ମାର୍ଫତଦାରଙ୍କ ବଂଶର ପ୍ରଧାନ ବ୍ୟକ୍ତିଙ୍କ ଲୋପ ଘଟିଥିବାରେ ତାଙ୍କର କେହି ବଂଶଧର ଠାକୁରଙ୍କ ଓ୍ୟାଲି ଓ୍ୟାରିସ ଭାବେ ଉକ୍ତ ଉକ୍ତିକୁ ଜଜ୍ ମହୋଦୟଙ୍କ ମହକୁମାରେ ମୂଖାବେଦନ ଭାବେ ସର୍ବସାଧାରଣଙ୍କ ଦସ୍ତଖତ ବଳରେ ପିଥ୍ୟା ବୟାନ ବୋଲି ସେଠାରେ ଜଣାଇ ଦେଇଥିଲେ । ତେଣୁ ଜଜ୍ ମହୋଦୟ ସନ୍ଦେହପନ୍ନ ହୋଇ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଅନୁଷ୍ଠାନକୁ ପରିଦର୍ଶନ ପାଇଁ ଆସିଥିଲେ । ମନ୍ଦିରଟି ନାନା ପ୍ରକାର ଜଙ୍ଗଲ ଗଛ ଲତା ଆଦିରେ ପରିପୂର୍ଣ୍ଣ ଥିବା ଓ ଦୈନନ୍ଦିନ ମାର୍ଜନାରେ ବିଭ୍ରାଟ ଘଟିଥିବା ସ୍ୱଚକ୍ଷୁରେ ଦେଖି ଶ୍ରୀ ଚଣ୍ଡେଶ୍ୱର ଦେବ ମନ୍ଦିର ତଥା ସମସ୍ତ ଭୂସମ୍ପତ୍ତି ଆଦିର ରକ୍ଷଣାବେକ୍ଷଣ ପାଇଁ ଚଣ୍ଡେଶ୍ୱର ମୌଜାର ସରବରାକାରଙ୍କ ପୁତ୍ର ସଦାଶିବ ବନମାଳୀ ସାମନ୍ତରାୟଙ୍କୁ ଟ୍ରଷ୍ଟି ବା ପରିଚାଳକରୂପେ ମନୋନୀତ କରି ମନ୍ଦିର ପରିଚାଳନା ପାଇଁ କେତେଗୁଡ଼ିଏ ଦଫା ଅନୁଯାୟୀ ନିୟମାବଳୀ ଏକ କାର୍ଯ୍ୟକ୍ରମ କରି ଦେଇଥିଲେ । ଏଥିରେ ପରିଚ୍ଛା ବା ଟ୍ରଷ୍ଟିଙ୍କୁ ଏପରି କ୍ଷମତା ଦିଆଯାଇଥିଲା ଯେ ଯଦି କୌଣସି ସେବକ ଠାକୁରଙ୍କ କାର୍ଯ୍ୟରେ ଅବହେଳା କରେ, ଅଥବା ମନ୍ଦିର କାରପରଦାରଙ୍କ ଆଦେଶ ପ୍ରତି ଅବଜ୍ଞା ପ୍ରଦର୍ଶନ କରେ, ତେବେ ମନ୍ଦିରର ତତ୍ତ୍ୱାବଧାରକ ପରିଚ୍ଛା ଉକ୍ତ ସେବକଙ୍କୁ ମନ୍ଦିର କାର୍ଯ୍ୟରୁ ବହିଷ୍କରଣ କରିଦେଇ ତାଙ୍କ ନିକଟରେ ଓ ତାଙ୍କ ଠାରେ

ଥିବା ଠାକୁରଙ୍କ ଖଣ୍ଡା ଜମିକୁ ନିଜ ଦଖଲକୁ ନେଇ ଅଥବା ଅନ୍ୟ ଲୋକକୁ ନୂତନ ସେବକ ନିଯୁକ୍ତ କରି ପାରିବେ । ତଦନୁଯାୟୀ ବନମାଳୀ ସାମନ୍ତରାୟ ଉକ୍ତ ମନ୍ଦିରର ତତ୍ତ୍ୱାବଧାରକ ଭାବେ ଚଣ୍ଡେଶ୍ୱର ଦେବଙ୍କ ବହୁ ଉନ୍ନତିମୂଳକ କାର୍ଯ୍ୟ କରିବାକୁ ଯିବାରୁ ଚଣ୍ଡେଶ୍ୱର ଗ୍ରାମର ଭୂତପୂର୍ବ ମାର୍ଫତଦାର ଓ ସେବକ ମାନଙ୍କ ଖାଇ ନିଗଦର ସେଥିରେ ଅସମ୍ମତ ହୋଇଥିଲେ । ଏପରିକି ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ପ୍ରତ୍ୟେକ ଜମିରେ ଦ୍ୱିତୀୟ କଲମରେ ବନ୍ଦୋବସ୍ତ କାଗଜାଦିରେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ନାମ ସଙ୍ଗେ ସେବକମାନଙ୍କ ନାମ ସନ୍ନିବିଷ୍ଟ ଥିବା ସ୍ଥଳେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ସଙ୍ଗେ ପରିଚାଳକ ଅଥବା ପରିଚାଳକ ନାମ ଯୋଗ କରାଯାଇ ଦଖଲରେ ଥିବା ସେବକ ମାନଙ୍କ ନାମ ମନ୍ତବ୍ୟ ଖାତାରେ କରାଯାଇ ଉକ୍ତ ସେବକ ବା ନିମିତ୍ତ ଉକ୍ତ ଠାକୁର ଜମି ଉପଭୋଗ କରନ୍ତୁ ଉକ୍ତଙ୍କ ପାଇଁ ଦାବୀ କରିବାରେ ସେବକମାନେ ସେଥିରେ ଘୋର ବିବାଦ କରିଥିବା ଶୁଣାଯାଏ । ବନ୍ଦୋବସ୍ତ ଅଫିସର ପରିଚାଳକଙ୍କ ଦାବୀକୁ ସମର୍ଥନ ନକରି କୃଷୀମାନଙ୍କ ନାମରେ ସେମାନଙ୍କ ଦଖଲରେ ଥିବା ଜମିକୁ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ସଙ୍ଗେ ସେବକ ସ୍ୱତ୍ୱେ ସାମିଲ କାଏମ ରଖିଲେ । ଏପରିକି ବହୁସ୍ଥଳ ଆଦି ଜାଗାମାନଙ୍କରେ ସେବକ ସ୍ୱତ୍ୱେ ଅନେକ ଘର ବାଗ ବୃତ୍ତି ସ୍ୱଳ୍ପ କେତେକ ଜମିକୁ ମଧ୍ୟ ସେବକମାନଙ୍କ ଦଖଲରେ ରଖାଯାଇଥିଲା । ତତ୍ତ୍ୱାବଧାରକ ବନମାଳୀ ସାମନ୍ତରାୟଙ୍କ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଉନ୍ନତିମୂଳକ-ଯୋଜନାରେ ସେବକମାନେ ଘୋର ବିରୋଧ କରିଥିଲେ ସାମାନ୍ୟ ସାମାନ୍ୟ କଥାରେ ଜିଲ୍ଲା ଜଜ୍‌ଙ୍କ ନିଷ୍ପତ୍ତିପାଇଁ ଯାଇଥିବା ଓ ଜିଲ୍ଲା ଜଜ୍‌ଙ୍କ ରାଏ ବିରୁଦ୍ଧେ ମହାମାନ୍ୟ ହାଇକୋର୍ଟକୁ ଶ୍ରୀ ଚଣ୍ଡେଶ୍ୱର-ଦେବଙ୍କ ମୋକଦ୍ଦମା ବହୁବାର ଯାଇଥିଲା । ଏହା ଫଳରେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଉନ୍ନତିରେ ବହୁ ବାଧାବିଘ୍ନ ଘଟିଲା

ଓ ପ୍ରତ୍ୟେକ ପକ୍ଷ ଟଙ୍କା ଦେବାକୁ ବାଧ୍ୟହେଲେ । ତେଣୁ ଉଭୟ ପକ୍ଷର ଧର୍ମ୍ମାବତାରେ ପାରିକୁଦର ତତ୍କାଳୀନ ରାଜା ଗୌରକୃଷ୍ଣ ହରିଚନ୍ଦନ ମହୋଦୟଙ୍କୁ ମନ୍ଦିର ଭଣ୍ଡାରର ଓ ମଧ୍ୟସ୍ଥ ସଚିବ ଜିଲ୍ଲା ଜଜ୍ ସାହେବଙ୍କ ମନ୍ତବ୍ୟ ଅନୁଯାୟୀ ନିଯୁକ୍ତ କରାଯାଇ ଲେ ମଧ୍ୟ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ବିଶେଷ କିଛି ଉନ୍ନତି ହୋଇ ପାରି ନ ଥିଲା । ଅଧିକନ୍ତୁ ସେବକମାନେ ମେଳବାନ୍ଧି ଜିଲ୍ଲା ଜଜଙ୍କ ନିକଟରେ ନୂତନ ପରିଚ୍ଛା ନିଯୁକ୍ତ ପାଇଁ ଆପତ୍ତି ଦରଖାସ୍ତ କରି-ଥିଲେ, ଏ ବାବଦରେ ଅଜସ୍ର ଟଙ୍କା ବ୍ୟୟ ହୋଇଥିଲା । ପରିଚ୍ଛାଙ୍କ ତରଫରୁ ଉକ୍ତ ମୋକଦ୍ଦମାରେ ଜଗପଡ଼ା ଗ୍ରାମର ଉକିଲ ମଦନ-ମୋହନ ପଟ୍ଟନାୟକ ବିନା ଫିସ୍‌ରେ ସେବକମାନଙ୍କ ବିରୁଦ୍ଧେ ଶ୍ରୀ ଚଣ୍ଡେଶ୍ୱରଦେବଙ୍କ ସପକ୍ଷେ ରହିଥିଲେ । ପୁଣି ସନ ୧୯୦୬ ମସିହା ତା ୨୦।୫।୦୬ ର ନଂ ୧ ନମ୍ବର ଦେଓ୍ୱାନୀ ମୋକଦ୍ଦମାଟିଏ ସେବକମାନଙ୍କ ତରଫରୁ ଜିଲ୍ଲା ଜଜ୍ କଟକଙ୍କ ମହକୁମାରେ ଆଗତ କରାଗଲା ସେଥିରେ ଦାବୀଥିଲା, ବନମାଳୀ ସାମନ୍ତରାୟଙ୍କୁ ତତ୍ତ୍ୱାବଧାରକ ପଦରୁ ବାହାର କରାଯାଇ ଅନ୍ୟଜଣକୁ ପରିଚ୍ଛାରେ ନିଯୁକ୍ତ କରାଯାଉ । ତଦନୁଯାୟୀ ପଣ୍ଡିତ ବନମାଳୀ ସାମନ୍ତରାୟ ସର୍ବଦା ମାମଲାମୋକଦ୍ଦମାରେ ଲିପ୍ତ ରହି କୌଣସି ଉନ୍ନତିମୂଳକ କାର୍ଯ୍ୟ କରି ନ ପାରିବାରୁ ଏବଂ ସେ ସ୍ୱହସ୍ତରୁ ଅର୍ଥବ୍ୟୟକରି ଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣ ପତିତ ପାବନ ଦେବଙ୍କ ବିଶାଳ ମନ୍ଦିର ନିର୍ମାଣକାର୍ଯ୍ୟରେ ବ୍ୟସ୍ତ ରହିବାରୁ ଉକ୍ତ ମୋକଦ୍ଦମାରେ ପ୍ରତିରୋଧ କରି ନ ଥିଲେ । ତେଣୁ ବନମାଳୀ ସାମନ୍ତରାଙ୍କ ପରିବର୍ତ୍ତେ କୁହୁଡ଼ି ଗୋପାଳପ୍ରସାଦ ମୌଜାନିବାସୀ ଅଭୟଚରଣ ପଟ୍ଟନାୟକଙ୍କୁ ମନ୍ଦିରରେ ତତ୍ତ୍ୱାବଧାରକ ପରିଚ୍ଛାରୂପେ ନିଯୁକ୍ତ କରାଗଲା ଏବଂ ସେ ନିୟମାନୁଯାୟୀ ଠାକୁରଙ୍କ ଥିବା ଜିନିଷପତ୍ର ଓ ପାଣ୍ଠି ଆଦି

ପରେଗୃଳକ ବନମାଳୀ ହାମନ୍ତରଙ୍କଠାରୁ ଗ୍ରହଣ ନେଲେ । ନୂତନ ପରେସ୍ଥ ଅଭୟ ଚରଣ ପଟ୍ଟନାୟକଙ୍କୁ ଜିଲ୍ଲାଜଜ୍ ଯେ. ଯେ. ପାଲ୍‌ଟେଲ ନୋ ୧୦ ଟି ଦଫାରେ ବନ୍ଦୋବସ୍ତକାରୀ କ୍ଷମତା ଦେଇଥିଲେ । ପରେସ୍ଥ ଠାକୁରଙ୍କ ଭୋଗ ଭଆଣ ନିରୂପଣ କରି ଜଜ୍ ମହୋଦୟଙ୍କ ଅନୁମୋଦିତ ବଜେଟ ଅନୁଯାୟୀ କାର୍ଯ୍ୟାରମ୍ଭ କରି ମନ୍ଦିରର ଜମା ଏବଂ ଖର୍ଚ୍ଚ ବର୍ତ୍ତମାନ ଜିଲ୍ଲା ଜଜ୍‌ଙ୍କ ନିକଟରେ ପ୍ରତିବର୍ଷ ଦାଖଲ କରୁଥିଲେ । ମାତ୍ର ଅଳ୍ପ କେତେବର୍ଷ ଶ୍ରୀ ଚନ୍ଦ୍ରେଶ୍ୱର ଦେବ - କାର୍ଯ୍ୟ ଶୃଙ୍ଖଳାକୁ ଆସିବା ବେଳେ ତାଙ୍କର ଅକାଳ ବିୟୋଗ ଘଟିଥିଲା । ପୁଣି ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ପରିଚାଳନାରେ ବିଘ୍ନ ଘଟିଲା । ସ୍ୱର୍ଗୀୟ ପରେସ୍ଥଙ୍କ ନାବାଳକ ଜନ୍ମିତ ପୁତ୍ର ମଦନ ମୋହନ ପଟ୍ଟନାୟକ ଓ ପୋଷ୍ୟ ପୁତ୍ର ଲକ୍ଷ୍ମୀଧର ପଟ୍ଟନାୟକଙ୍କ ଅଭିଭାବକରୂପେ ହରିପୁର ଗ୍ରାମ ନିବାସୀ ଭଗବାନ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ବିଜେସ୍ଥଳ ତୋଟା ଓ ବଗାଏତମାନ ମୌରସି ସୂତ୍ରେ ନାବାଳକମାନଙ୍କ ନାମରେ ଖୋର୍ଦ୍ଧା ଖାସମହାଲ ରେକର୍ଡ଼ରେ ନାମଯାଗ୍ ତା ୧୦ - ୩ - ୨୭ ରିଖ ସନ ୧୯୩୩ ସାଲ ମିଲନ ଖସଡ଼ାରେ ଦରଜ କରାଗଲା । ମାତ୍ର ମନ୍ଦିର ପରିଚାଳନା ପ୍ରତି କେହି ଦୃଷ୍ଟି ଦେଇ ନ ଥିଲେ । ସେହି ସମୟରୁ ମନ୍ଦିର ଜୀର୍ଣ୍ଣ ସଂସ୍କାର କମିଟି ଗଢ଼ା ଯାଇଥିବା ଆଗରୁ କହିଛି ।

ପୁଣି ପୋଷ୍ୟପୁତ୍ର ଓ ଜନ୍ମିତ ପୁତ୍ର ମଦନ ମୋହନଙ୍କ ମଧ୍ୟରେ ପାରିବାରିକ ମତାନ୍ତର ଘଟି ଜିଲ୍ଲାଜଜ୍‌ଙ୍କ ଇଜଲାସରେ ମଦନ ମୋହନ ପଟ୍ଟନାୟକ ମୃତ ପରେସ୍ଥଙ୍କ ଓ୍ୟାରିସ ରୂପେ ଡିକ୍ରୀ ପାଇଥିବାରୁ ତଦନୁଯାୟୀ ସନ ୧୯୩୭ ସାଲ ମିଲାନ ଖସଡ଼ା ହୁକୁମ ମୁତାବକ ତା ୨୨।୮।୨୯ ରିଖ ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ଓ୍ୟାରିସ ପରେସ୍ଥରୂପେ ରେକର୍ଡ ସଂଶୋଧନ କରାଯାଇ ଥିଲା । କିନ୍ତୁ ଦିନାନ୍ତେ

ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ଦେବୋତ୍ତର ଉଦ୍ୟାନରୁ ବହୁମୂଲ୍ୟବାନ ଆମ୍ବ ଓ ପଣସ ବୃକ୍ଷମାନ ମରିଯିବାରୁ ସେ ତାହା ମୌରସି ସତ୍ତ୍ୱ-ରେ ବିକ୍ରୀ କରିଥିଲେ ଓ ଚନ୍ଦ୍ରେଶ୍ୱର ଦେବଙ୍କ ବିଭିନ୍ନ କାର୍ତ୍ତିକ ପୂର୍ଣ୍ଣିମା, ଶିବରାତ୍ର ମେଳା ଆଦିରେ ଆଦାୟ ଟଙ୍କାମାନ ତାଙ୍କ ସ୍ୱକୀୟ ଖର୍ଚ୍ଚରେ ବ୍ୟୟିତ ହେଲା । ସର୍ବସାଧାରଣଙ୍କ ଆବଶ୍ୟକୀୟ ବ୍ୟବସ୍ଥାରେ କୌଣସି ଚିନ୍ତା ନିଆଗଲା ନାହିଁ । ପ୍ରାଚୀନ ମନ୍ଦିରରେ ବହୁ ବୃକ୍ଷଲତା ଆଦି ବଢ଼ିଲା, ଦୈନନ୍ଦିନ ନୀତିରେ ଓ ପର୍ବ ପର୍ବାଣିରେ ବିଶେଷ ବିଶୃଙ୍ଖଳା ଘଟିଲା ଏବଂ ଶେଷକୁ କେତେକ ନୀତି ମଧ୍ୟ ବନ୍ଦ ହେଲା ।

ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ଯାତ୍ରା ମଧ୍ୟରେ କାର୍ତ୍ତିକ ପୂର୍ଣ୍ଣିମା ଯାତ୍ରା ପ୍ରଧାନ । ତା ପରେ ଚନ୍ଦନ ଯାତ୍ରା ମହୋତ୍ସବଟି ବହୁକାଳରୁ କୁହୁଣ୍ଡୀ ଛଗଡ଼ର ପ୍ରଧାନ ପ୍ରଧାନ ଦଳବେହେରା ଓ ଭ୍ରମରବର ନାୟକଙ୍କ ତତ୍ତ୍ୱାବଧାନରେ ବହୁତ ପୂର୍ବ ଆଡ଼ମ୍ବର ସହକାରେ ପାଳିତ ହେଉଥିଲା । ପ୍ରତ୍ୟେକ ଗଡ଼ର ଦଳବେହେରା ଓ ବଡ଼ପାଗ ଗଡ଼ର ଭ୍ରମରବର ରାୟ ଗୋଟିପୁଅ ନାଚଦଳ ଶ୍ରୀ ଚନ୍ଦ୍ରେଶ୍ୱରଙ୍କ ଚନ୍ଦନଯାତ୍ରାରେ ଏକତ୍ରିତ ହୋଇ ଗୋଟିପୁଅ ନାଚରେ ପ୍ରତି-ଯୋଗିତା ହେଉଥିଲା । ଆଉ ମଧ୍ୟ ବହୁ ପ୍ରକାରର ପ୍ରାଚୀନ ଫଳଖାଣ୍ଡ ଓ ବାଣ ଆଦି କରିବାଇ ବହୁଲୋକ ଏକତ୍ରିତ ହୋଇ ଚନ୍ଦନ ଯାତ୍ରା ଉତ୍ସବ ପାଳିତ ହେଉଥିଲା । କାଳକ୍ରମେ କୁହୁଣ୍ଡୀ ଛଗଡ଼ର ଗୋଟି-ପୁଅ ନାଚ ସଂକ୍ରାନ୍ତରେ ବିବାଦ ଉପୁଜି ଓ ମତାନ୍ତର ଘଟି ଗୋଟି ଗଡ଼ ଦଳବେହେରା ଓ ବଡ଼ପାଗଗଡ଼ର ଭ୍ରମରବର ରାଏ ଏଥିରୁ କ୍ଷାନ୍ତ ହେଲେ । କେବଳ କୁହୁଣ୍ଡୀ ନାଳଗଡ଼ର ଦଳବେହେରା; ଭୂଇଁମୂଳ, କୋଠକରଣ, ତ୍ୟାଉ ପଟ୍ଟନାୟକ ଓ କଉଡ଼ିଆ ସରବରାକାର ମାନଙ୍କ ଦ୍ୱାରା ଉକ୍ତ ଚନ୍ଦନ ମହୋତ୍ସବଟି ପାଳିତ

ହୋଇ ଆସୁଥିଲ । କୁଦ୍ଧଣ୍ଡି ଗଡ଼ରେ ରଜାଥିବା ବେଳେ କୁଦ୍ଧଣ୍ଡି ରଜାଙ୍କ ଦ୍ୱାର କୁ ଶ୍ରୀ ଚଣ୍ଡେଶ୍ୱର ଦେବ ଶୀତଳଷଷ୍ଠୀ ଓ ଦୋଳ-ଯାତ୍ରା ଚତୁର୍ଦ୍ଦଶି ଉପଲକ୍ଷେ ବିଜେ ଠାକୁର ଓ ଠାକୁରାଣୀ ଦୋଳ-ଯୁଚଶ୍ୱ ଓ ଶୀତଳଭୋଗ ନୈବେଦ୍ୟ ଗ୍ରହଣ ଚ ଇଁ ଯିବା ପ୍ରଥା ପ୍ରାଚୀନ କାଳରୁ ଥିଲ । ତଦନୁଯାୟୀ ଗଡ଼ର ଚାରିଜଣ ରାଜ କର୍ମଚାରୀ ଯଥା ୧ ଦଳବେହେରା. ୨ ଭୂଇଁମୂଳ ୩ କୋଠକରଣ ୪ କଉଡ଼ ଭଗିଆ-ମାନଙ୍କ ଦ୍ୱାରରେ ବୃତଉଦ୍ଭେଜ ଓ ଶୀତଳଭୋଗ ଖାଇ ଆସୁଥିଲେ । ରାଜବଂଶ କୁଦ୍ଧଣ୍ଡିରୁ ଚାଲିଯିବାରୁ ଓ ଦେଶରେ ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେବାପରେ ଉପରୋକ୍ତ ରାଜକର୍ମଚାରୀମାନେ ବ୍ରିଟିଶ ସରକାରଙ୍କ ଦ୍ୱାରା ସରବରାକାରରୂପେ ମନୋନୀତ ହୋଇଥିଲେ । ରାଜାଙ୍କ ଦ୍ୱାର ଦେଶରେ ଥିବା ଶଙ୍ଖ ଶଙ୍କୁ ସ୍ଥାନରେ ଏବଂ ୪ ଗୋଟି ସରବରାକାରମାନଙ୍କ ଦ୍ୱାରରେ ପୂର୍ବ ପ୍ରଥା ଅନୁସାରେ ଦୋଳଯୁଚଶ୍ୱ ଓ ଶୀତଳଷଷ୍ଠୀ ଶୀତଳ ଭୋଗ ଗ୍ରହଣ କରି ଆସୁ-ଥିଲେ । କାଳକ୍ରମେ ଦଳବେହେରା, ଭୂଇଁମୂଳଙ୍କ, କୋଠକରଣ ଓ କଉଡ଼ ଭଗିଆଙ୍କ ଭାଇ ବାରଦରଙ୍କ ବଂଶ ବୃଦ୍ଧି ହେବାରୁ ସମସ୍ତ ବଂଶଙ୍କର ଦ୍ୱାର ଦେଶରେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ବିଜେ ଠାକୁର ଠାକୁରାଣୀଙ୍କୁ ଶୀତଳଷଷ୍ଠୀ ଓ ଦୋଳ ଚତୁର୍ଦ୍ଦଶୀ ଚୃତରି ଭୋଗ ପୃଥକ୍ ପୃଥକ ଭାବେ ଦେବାକୁ କହିଥିବାରେ ଉକ୍ତ ସରବରାକାରମାନେ ଉକ୍ତ ପ୍ରସ୍ତାବକୁ କାର୍ଯ୍ୟରେ ପରିଣତ କଲେ । ତତ୍‌ସଂଙ୍ଗାନ୍ତେ କୁଦ୍ଧଣ୍ଡି ଗଡ଼ର ଆଜି କେତେକ ପ୍ରଧାନ ବ୍ୟକ୍ତିଙ୍କ ଉଦ୍‌ଯୋଗରେ ଚନ୍ଦନ ମହୋତ୍ସବ ଓ ଚଣ୍ଡେଶ୍ୱର ଦେବଙ୍କ କାର୍ଯ୍ୟାନୁଷ୍ଠାନ ଚଳିଥାଏ ସେମାନଙ୍କ ମଧ୍ୟରେ ଠାକୁର ମୌସୁଫଙ୍କୁ ଉକ୍ତ ଶୀତଳଷଷ୍ଠୀ ଓ ଦୋଳ ଚୃତରି ଭୋଗ ସେମାନଙ୍କ ଦ୍ୱାର ଦେଶରେ ଦେବାକୁ ଦାବୀ କରିଥିଲେ । ମାତ୍ର ପୂର୍ବୋକ୍ତ ରାଜଦତ୍ତ ସିଦ୍ଧିଥିବା ସରବରାକାରମାନେ ତହିଁରେ ବିରୁଦ୍ଧ ମତ ପୋଷଣ କରି ଥିବାରୁ ଉଭୟଙ୍କ ମଧ୍ୟରେ

ମହାଲୟର ଷଷ୍ଠି ଉକ୍ତ ଚନ୍ଦନ ଯାତ୍ରା ମହୋତ୍ସବଟି କାଳକ୍ରମେ ଲୋପପ୍ରାପ୍ତ ହେଲା । ଗତ ସନ ୧୮୩୮ ମସିହାରେ ଚଣ୍ଡେଶ୍ୱର ଦେବଙ୍କ କେତେକ ଜଣ ଉତ୍ସାହୀ ସେବକଙ୍କ ଦ୍ୱାରା ଉକ୍ତ ଚନ୍ଦନ ମହୋତ୍ସବଟି ଦୁଇବର୍ଷ କାଳ ମହାସମାରୋହ ସହ ଚାଲିଆସୁଥିବା ସତ୍ତ୍ୱେ ପରସ୍ପ ତତ୍ତ୍ୱାବଧାୟକଙ୍କ ମନ ଅଭିପ୍ରାୟ ହେତୁ ନାନାପ୍ରକାର ମାମଲାମକଦ୍ଦମା ଉତ୍ଥାପିତ ହୋଇ ଗତ ସନ ୧୯୪୦ ମସିହାରେ ଉକ୍ତ ମହୋତ୍ସବ ବନ୍ଦ ହେଲା ।

ଶ୍ରୀ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଦୈନନ୍ଦିନ ନୀତି ବ୍ୟତୀତ ବର୍ଷ ମଧ୍ୟରେ ଅନେକ ଗୁଡ଼ିଏ ପାର୍ବଣ ଯଥା ଜନ୍ମ, ମକର ସଂକ୍ରାନ୍ତି, ପୌଷ ପୂର୍ଣ୍ଣିମା, ବସନ୍ତ ପଞ୍ଚମୀ ଦୋଳପର୍ବ, କୋଡ଼ିଏ ଦିନ ବ୍ୟାପି ଚନ୍ଦନ ଯାତ୍ରା, ଶିବ ବିବାହ, ଶୀତଳଷଷ୍ଠୀ, ଶୟନ ଚତୁର୍ଦ୍ଦଶୀ, ଉତ୍ଥାପନ ଚତୁର୍ଦ୍ଦଶୀ, କାର୍ତ୍ତିକ, ମାଘ, ବୈଶାଖ, ଆଷାଢ଼; ମାସମାନଙ୍କରେ ସୋମବାର ବେଢ଼ା ଓ ଶିବରାତ୍ରି ଆଦି ଯାତ୍ରାପାଇଁ ଜମି ଖଞ୍ଜା ହୋଇଥିଲା । ଦୈନନ୍ଦିନ ତିନିଗୋଟି ଧୂପରେ ଅନ୍ନ, ଡାଲି, ତରକାରୀ, ଖିରି ଆଦିର ଖଞ୍ଜାଥିବା, ଛତିଶ ନିଯୋଗ ଏବଂ ପଣାଭୋଗ ଦେବାର ବିଧି ପୂର୍ବରୁ ଥିଲା । କାଳକ୍ରମେ ଉକ୍ତନୀତି ମାନଙ୍କରୁ କେତେକ ବନ୍ଦହୋଇ ଗଲାଣି । ବ୍ରିଟିଶ୍ ସରକାରଙ୍କ ସମୟରେ ପୁରୀ ଓ କଟକ ଜିଲ୍ଲାରେ କେତୋଟି ଠାକୁର ଅନୁଷ୍ଠାନ ଓ ମଠ ଦୃଷ୍ଟାନ୍ତ ସ୍ୱରୂପ ପୁରୀ କ୍ଷେତ୍ରରେ ଶ୍ରୀ ଜଗନ୍ନାଥ ବଲ୍ଲଭ ମଠ, ଫୁଲ ଅଳସା ସାକ୍ଷିଗୋପାଳଜୀଉଙ୍କ ମନ୍ଦିର, ଭୁବନେଶ୍ୱର ଶ୍ରୀ ଲିଙ୍ଗରାଜ ଦେବ ମନ୍ଦିର, ବାଣପୁରସ୍ଥ ଶ୍ରୀ ଦକ୍ଷେଶ୍ୱର ଦେବଙ୍କ ମନ୍ଦିର, ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ଓ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଶ୍ରୀ ବଳଦେବ ଜୀଉଙ୍କ ମନ୍ଦିର ମାନ ଏକପ୍ରକାର କମିଟି ଦ୍ୱାରା ପରିଚାଳିତ ହେଉଥିଲା । ସନ ୧୯୩୧ ମସିହାରେ ପ୍ରଥମ କଂଗ୍ରେସ

ମନ୍ତ୍ରୀମଣ୍ଡଳ ଶାସନ କାଳରେ ଦେବୋତ୍ତର ବିଭାଗଟି କରାଯାଇ ଜଣେ ଉଚ୍ଚ ପାହ୍ୱାଆ ଅଫିସରଙ୍କୁ କମିଶନର ରୂପେ ନିଯୁକ୍ତ କରାଗଲା ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ପ୍ରାଚୀନ ମନ୍ଦିରଟି ବହୁ ଦିନରୁ ଜିଲ୍ଲା ଜଜ୍‌ଙ୍କ ନିଯୁକ୍ତ ଏକ ସଭ୍ୟଙ୍କ ପରିଚାଳନାଧୀନରେ ଥାଇ ମଧ୍ୟ ନାନାବିଧ ବିଭ୍ରାଟ ସୃଷ୍ଟି ହେବାରୁ ଓଡ଼ିଶା ଦେବୋତ୍ତର ଆଇନର ଆଶ୍ରୟରେ କୁହୁଡ଼ୀ ଗ୍ରାମର ବହୁ ଧର୍ମପ୍ରାଣ ବ୍ୟକ୍ତି ସନ ୧୯୭୭ ମସିହାରେ ଦେବୋତ୍ତର କମିଶନରଙ୍କ ନିକଟରେ ଗୋଟିଏ ଦରଖାସ୍ତ କରିଥିଲେ । ଉକ୍ତ ଦରଖାସ୍ତ ଫଳରେ ଗତ ସନ ୧୯୭୮ ମାର୍ଚ୍ଚ ମାସ ତା ୨୦ ରିଖରେ ଦେବୋତ୍ତର କମିଶନର ଶ୍ରୀ ରଙ୍ଗାରାଓ ଚଣ୍ଡେଶ୍ୱର ଦେବ ମନ୍ଦିର ପରିଦର୍ଶନକୁ ଆସି ସର୍ବସାଧାରଣଙ୍କ ଉପସ୍ଥିତିରେ ଏହି ମନ୍ଦିରର ସୁପରିଚାଳନା ନିମିତ୍ତ ମନ୍ଦିରର ଭୂତପୂର୍ବ ପରିଚ୍ଛା ମଦନମୋହନ ପଟ୍ଟନାୟକ, ଶ୍ରୀ ଲୋକନାଥ ମଙ୍ଗରାଜ ଓ ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ରଙ୍କୁ ଟ୍ରଷ୍ଟି ରୂପେ ନିଯୁକ୍ତ କରିଥିଲେ ଏବଂ ଏହି ପ୍ରାଚୀନ ମନ୍ଦିରର ସୁରକ୍ଷାପାଇଁ ଭାରତ ସରକାରଙ୍କ ପ୍ରାଚୀନ କୀର୍ତ୍ତିରକ୍ଷା ବିଭାଗର ଉଚ୍ଚ କର୍ମକର୍ତ୍ତାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ଓ ଟ୍ରଷ୍ଟିମାନଙ୍କୁ ନ ୧୩୮୮/୩୯ ତା ୧୦।୮।୭୮ ଚିଠି ଦ୍ୱାରା ନିର୍ଦ୍ଦେଶ ଦେଇଥିଲେ । ମୃତ୍ୟୁଞ୍ଜୟ ମହାପାତ୍ର ସ୍ଥାନୀୟ ଲୋକ ଥିବାରୁ ଟ୍ରଷ୍ଟିବୋର୍ଡ଼ର ମ୍ୟାନେଜିଂ ଟ୍ରଷ୍ଟି ରୂପେ ମନୋନୀତ ହୋଇଥିଲେ । ମ୍ୟାନେଜିଂ ଟ୍ରଷ୍ଟିଙ୍କଠାରେ ବହୁ ଦାୟିତ୍ୱ ଥାଏ, ପୁରୁଣା ପରିଚ୍ଛା ମଧ୍ୟ ଜଣେ ଟ୍ରଷ୍ଟିଥିଲେ । ତେଣୁ ପ୍ରଥମେ କିଛି ଅସୁବିଧା ନ ଘଟି ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ଉନ୍ନତି ଆଡ଼କୁ ଗତିକରିବ ବୋଲି ଆଶାପୋଷଣ କରାଯାଇଥିଲା । ମାତ୍ର ଅଳ୍ପଦିନ ପରେ ପରିଚ୍ଛାଙ୍କ ନେତୃତ୍ୱରେ ଚଣ୍ଡେଶ୍ୱର ଦେବଙ୍କ ଅଧିକାଂଶ ସେବକ ମନ୍ଦିରର ଦୈନନ୍ଦିନ ନୀତି ପର୍ବପର୍ବାଣି ଆଦି ବନ୍ଦ କରି



ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ର
ପ୍ରଥମ ମ୍ୟାନେଜିଂ ଟ୍ରଷ୍ଟି



ଶ୍ରୀ ନରସିଂହ ମହାପାତ୍ର
ବର୍ତ୍ତମାନ ମ୍ୟାନେଜିଂ ଟ୍ରଷ୍ଟି ଓ କାର୍ଯ୍ୟସଂସ୍ଥାର
କମିଟିର ସଭାପତି

କରଇଥିଲେ । ତେଣୁ ଟ୍ରଷ୍ଟିବୋର୍ଡ଼ର ଅନୁରୋଧ ଅନୁଯାୟୀ ମ୍ୟାନେଜିଂ ଟ୍ରଷ୍ଟି ଉକ୍ତ ପଟ୍ଟପଟ୍ଟାଣି ଓ ମାଡ ଆଦି ନିଜ ହାତପାଣି ଦ୍ୱାରା କେତେ ଦିନ ଚଳାଇ ଥିଲେ । ନବନିଯୁକ୍ତ ଟ୍ରଷ୍ଟି ଓ ପୂର୍ବ ପଣ୍ଡିତ ମଦନମୋହନ ପଟ୍ଟନାୟକ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଜମା ଖର୍ଚ୍ଚ କାଗଜାଦି କମ୍ପ୍ୟା ତାଙ୍କ ପାଖେ ଥିବା ଜମା ବୋର୍ଡ଼ର ନିର୍ଦ୍ଦେଶକୁ ଅମାନ୍ୟ କରି ମ୍ୟାନେଜିଂ ଟ୍ରଷ୍ଟିଙ୍କୁ ବୁଝି ଦେଲେ ନାହିଁ କମ୍ପ୍ୟା କମିଟିର ନିର୍ଦ୍ଦେଶକୁ ମାନିଲେ ନାହିଁ । ଅଧିକନ୍ତୁ ମନ୍ଦିର ସେବକ ମାନଙ୍କୁ ନାନା ପ୍ରକାର କୁଶିକ୍ଷା ଦେଇ ମନ୍ଦିର ମାଡଆଦିରେ ବହୁ ବିଭ୍ରାଟ ସୃଷ୍ଟି କରାଇଲେ । ଏ ସମ୍ବନ୍ଧରେ କମିସନର ମହୋଦୟଙ୍କୁ ଟ୍ରଷ୍ଟି ବୋର୍ଡ଼ ତରଫରୁ ରିପୋର୍ଟ କରାଗଲା । କମିଶନର ମହୋଦୟ ଉକ୍ତ ରିପୋର୍ଟ ସତ୍ୟଥିବାର ପ୍ରମାଣ ପାଇ ଗତ ସ୍ନ ୧୯୫୭ ତା ୩୦ ।୭।୫୭ ନଂ ୮ ମ୍ବର ଅର୍ଡ଼ର ଦ୍ୱାରା ମନ୍ଦିରର ପୂର୍ବ ପଣ୍ଡିତ ମଦନ-ମୋହନ ପଟ୍ଟନାୟକଙ୍କୁ ଚଣ୍ଡେଶ୍ୱର ମନ୍ଦିର ପରିଚାଳନା ବୋର୍ଡ଼ରୁ ଅନ୍ତର କରିଥିଲେ ଏବଂ ତାଙ୍କ ସ୍ଥାନରେ ନଂ ୫୮/୨୨୯ ମ୍ବର ଚିଠି ଦ୍ୱାରା ଗତ ତା ୬।୮।୫୭ ରିଖରେ ଦୁର୍ଗାଚରଣ ଶତପଥିଙ୍କୁ ଟ୍ରଷ୍ଟିରୂପେ ନିଯୁକ୍ତ କରିଥିଲେ । ମଦନମୋହନ ପଟ୍ଟନାୟକ ଟ୍ରଷ୍ଟି ପଦରୁ ବହିଷ୍କୃତ ହୋଇ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମାରଫତଦାରୀ ସମ୍ବାଦରେ କାଳେ ବ୍ୟାଘାତ ଘଟିବ ଜାଣି ଚଣ୍ଡେଶ୍ୱର ମୌଜା ନଂ ୧୧।୧୨ମ୍ବର ଖାତା ଟ୍ରସ୍ଟ, ଚଣ୍ଡେଶ୍ୱର ଦେବ ମନ୍ଦିର ଉଦ୍ୟାନ ପୁଷ୍କରିଣୀ ଆଦି କେତେକ ଘରବାରୀ ଜାଗା ଏ ୧୮-୦ ୭ଡ଼ି: ଜମିପକ୍ଷେ ଗତ ସ୍ନ ୧୯ ୫୮/ ୯ ମସିହା ପୁରୀ ଆଡ଼ିସନାଲ ମୁନସଫଙ୍କ କୋର୍ଟରେ ନଂ ୨୭/ ୧୯୭ ମ୍ବର ସତ୍ତ୍ୱସାବ୍ୟସ୍ତ ମୋକଦ୍ଦମା ଟ୍ରଷ୍ଟିବୋର୍ଡ଼ର ମ୍ୟାନେଜିଂ ଟ୍ରଷ୍ଟି ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ର ଓ ଶ୍ରୀ ଲୋକନାଥ ମଙ୍ଗରାଜ, ଶ୍ରୀ ଦୁର୍ଗା-ଚରଣ ଶତପଥିଙ୍କ ବିରୁଦ୍ଧରେ ଦାଏର କରିଥିଲେ ଓ କୋର୍ଟ ତରଫରୁ ନିଷେଧ ଆଜ୍ଞା ଜାରିର କରାଯାଇଥିଲା । ଟ୍ରଷ୍ଟିମାନଙ୍କ ଉକ୍ତ

ମୋକଦ୍ଦମାରେ ଜବାବ ଦାନାନ୍ତେ କୋର୍ଟରେ ପ୍ରାଥମିକ ପ୍ରମାଣ ଦିଆଯାଇ ନିଷେଧ ଆଜ୍ଞା କୋର୍ଟ ତରଫରୁ ଟ୍ରଷ୍ଟିମାନଙ୍କ ଉପରୁ ଉଠାଇ ଦିଆଗଲା । ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ସମସ୍ତ କାଗଜପତ୍ର ଓ ଜମି ଜମା ପୁରୁଣା ପରିଚ୍ଛଙ୍କ ନିକଟ ଥାଇ ସେବକମାନଙ୍କ ନିକଟେ ଓ ଠାକୁରଙ୍କ କୃଷ କରୁଥିବା ଜମିର କୃଷିମାନେ ଠାକୁରଙ୍କ ପ୍ରାପ୍ୟ ଧାନ କିମ୍ବା ଖଜଣା ଟ୍ରଷ୍ଟି ବୋର୍ଡ଼କୁ କେହିବି ଦେଲେ ନାହିଁ । ତେଣୁ ଟ୍ରଷ୍ଟି ବୋର୍ଡ଼ର ନିର୍ଦ୍ଦେଶ ଅନୁଯାୟୀ ଠାକୁର ମୌସୁଫଙ୍କ ଜମି ଜମା ଓ ଖଞ୍ଜସ୍ଥାନ ସଂଗ୍ରହ ପରିଚ୍ଛଙ୍କ ତରଫରୁ ଦାଏର ହୋଇ ଥିବା ମୋକଦ୍ଦମାର ପରିଚାଳନ ପାଇଁ ଜଣେ ଅସ୍ଥାୟୀ କିରାନିଙ୍କ ଦରମା ଓ ଦୈନନ୍ଦିନ ପବପର୍ବାଣି ନିମନ୍ତେ ସାମୟିକ ଖର୍ଚ୍ଚ ଓ ଡାକଖର୍ଚ୍ଚ ମ୍ୟାନେଜିଂ ଟ୍ରଷ୍ଟି ନିଜ ହାତପାଣ୍ଠିରୁ ଟ୍ରଷ୍ଟି ବୋର୍ଡ଼ର ନିର୍ଦ୍ଦେଶକ୍ରମେ ଚଳାଇ ଆସୁଥିଲେ ଏବଂ ଟ୍ରଷ୍ଟି ବୋର୍ଡ଼ ତରଫରୁ ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ମାଳୀ ସେବକ ଲୋକନାଥ ରଣା ଅବୈତନିକ ଭାବେ ବୋର୍ଡ଼ର ନିର୍ଦ୍ଦେଶକ୍ରମେ ଉକ୍ତ କିରାଣୀ କାର୍ଯ୍ୟ କରୁଥିଲେ । ଆମ୍ଭର ଶାରୀରିକ ଅସ୍ୱାସ୍ଥ୍ୟ ଯୋଗୁଁ ଟ୍ରଷ୍ଟି ବୋର୍ଡ଼ର ସମସ୍ତ ଦାୟିତ୍ୱ ଟ୍ରଷ୍ଟି ଲୋକନାଥ ମଙ୍ଗରାଜଙ୍କ ଉପରେ ଦିଆ ଯାଇଥିଲା । ଆମ୍ଭେ ଅପ୍ରୋପଚାରରେ ବିଦେଶରେ ଥିବାବେଳେ ଚନ୍ଦ୍ରେଶ୍ୱର ଗ୍ରାମର କେତେକ ସେବକ ଲୋକନାଥ ରଣାଙ୍କୁ ଘରେ ପଶି ମାଡ଼ମାରି ଥିବାରୁ ମ୍ୟାନେଜିଂ ଟ୍ରଷ୍ଟି ରୂପରେ ନିଯୁକ୍ତ ଥିବା ଲୋକନାଥ ମଙ୍ଗରାଜଙ୍କ ନିର୍ଦ୍ଦେଶକ୍ରମେ ଫୌଜଦାରୀ ଦଣ୍ଡବିଧି ଆଇନର ଆଶ୍ରୟ ନେଇ ଏକ ମୋକଦ୍ଦମା ଖୋର୍ଦ୍ଧା ସ: ଡ଼: ଅଫିସରଙ୍କଠାରେ ଦାଏର କରିଥିଲେ । ଏ ସମସ୍ତ ଖର୍ଚ୍ଚ ତୁଲାଇବାପାଇଁ ଆମ୍ଭଙ୍କୁ ଅନେକ ସମୟରେ ଅର୍ଥାଭାବବଶତଃ ବାହାରୁ କରଜ କରିବାକୁ ପଡ଼ିଥିଲା । ଏ ସମ୍ବନ୍ଧରେ କମିଶନରଙ୍କ ମହୋଦୟଙ୍କୁ ଅନୁରୋଧ କରିଥିଲେ ମଧ୍ୟ

କମିଶନର ମହୋଦୟ ଖରଚ ସବୁକୁ ସ୍ୱୀକୃତ ଜଣାଇ ଶୀଘ୍ର ଟଙ୍କା ମିଳିବା ଉପାୟ ନକରି ଖର୍ଚ୍ଚ ଟଙ୍କା ପରେ ପାଇବାକୁ ସାନ୍ତ୍ୱନା ମାତ୍ର ଦେଇଥିଲେ । ପରେସ୍ତଙ୍କ ସଭ୍ୟସାବ୍ୟସ୍ତ ମୋକଦ୍ଦମା ଗତ ସନ ୧୯୮୯ ମସିହା ଜାନୁୟାରୀ ମାସ ତା ୨୦ ରିଖରେ ଟ୍ରଷ୍ଟିବୋର୍ଡ଼ ଜପ୍ତ ଲାଭ କଲାପରି । ତତ୍ପୂର୍ବରୁ ଦେବୋତ୍ତର କମିଶନରଙ୍କ ନିକଟରେ ଦେବୋତ୍ତର ଆଇନର ନଂ ୪୯ ନମ୍ବର ଧାରା ମତେ ପରିସ୍ତଙ୍କ ଦଖଲରେ ଥିବା ଓ କେତେକ ସେବକମାନଙ୍କ ଦଖଲରେ ଥିବା ଜମି ପାଇବା ନିମନ୍ତେ ପ୍ରାର୍ଥନା କରି ଯାଇଥିଲେ, ସେ ଦଖଲ ପ୍ରାର୍ଥନାନୁଯାୟୀ ଗତ ତା ୦-୮-୮୯ ରିଖେ କମିଶନର ମହୋଦୟଙ୍କ ନଂ ୪୫ ନମ୍ବର ଅର୍ଡ଼ର ଦ୍ୱାରା ଠାକୁରଙ୍କ ବଜେସ୍ଥଳ ଓ ଉଦ୍ୟାନ ଆଉ କେତେକ ଧାନ ଜମି ଟ୍ରଷ୍ଟି ବୋର୍ଡ଼କୁ ଦଖଲ ଦିଆ ଯାଇଥିଲା । ଟ୍ରଷ୍ଟିବୋର୍ଡ଼ ଓ ଠାକୁରଙ୍କ ସେବକମାନଙ୍କ ମଧ୍ୟରେ ସବୁବେଳେ ମନାନ୍ତର ଲଗି ରହିଥିବାରୁ କମିଶନର ଶ୍ରୀଯୁକ୍ତ ବଙ୍କିମଚନ୍ଦ୍ର ପଟ୍ଟନାୟକ ଗତ ତା ରିଖରେ ଚଣ୍ଡେଶ୍ୱର ମନ୍ଦିର ପରି- ଦର୍ଶନକୁ ଆସି ଠାକୁର ସେବକମାନେ ସ୍ଥାନୀୟ ଜରିପଡ଼ା ବାଉଁଶମୂଳ ଗ୍ରାମ ନିବାସୀ ଶ୍ରୀ ରଘୁନାଥ ରାୟ; ଦୀନବନ୍ଧୁ ମହାପାତ୍ର, ହରେକୃଷ୍ଣ ପ୍ରଧାନ ମାନଙ୍କୁ ଉକ୍ତ ଚଣ୍ଡେଶ୍ୱର ଦେବଙ୍କ ଠାକୁର ମାତରେ ଉପୁଜିଥିବା ବିବାଦମାନ ନିଷ୍ପତ୍ତି ସଙ୍ଗେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଉନ୍ନତି ପାଇଁ ଆଡ଼ଭାଇଜରି ବୋର୍ଡ଼ ସଭ୍ୟରୂପେ ଉକ୍ତ ଜଣ ୩ ଜଣ ଭଦ୍ରଲୋକଙ୍କୁ ମନୋନୀତ କରିଥିଲେ । ଆମ୍ଭେ ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି ଭାବେ କମିଶନର ମହୋଦୟଙ୍କ ନିକଟେ ସ୍ୱୀକୃତ ଜଣାଇଥିଲୁ । ମାତ୍ର ଏମାନେ ଗଣ୍ଡଗୋଳ ନିଷ୍ପତ୍ତି କରି ମନ୍ଦିରର ସୁପରିଚାଳନା ନିମନ୍ତେ ସୁପରାମର୍ଶ ପରିବର୍ତ୍ତେ ଏପରି କାର୍ଯ୍ୟମାନ କରାଇଲେ ଯଦ୍ଦ୍ୱାରା ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ସୁପରିଚାଳନାରେ ବ୍ୟାଘାତ ଜନ୍ମିଲା । ଆମ୍ଭେ ମ୍ୟାନେଜିଂ ଟ୍ରଷ୍ଟିଙ୍କ ଶରୀର ଅସୁସ୍ଥ ଥିବାରୁ

କମିଶନର ମହୋଦୟଙ୍କ ଆଦେଶକ୍ରମେ ନ ୨୨୧୯୦-୯୧/୯୭(୧) ତା ୧୮-୯-୫୦ ମା ୩ ସ ଛୁଟି ପାଇ ଗତ ତା ୧-୧୦-୫୯ ରେଖ ଟ୍ରଷ୍ଟି ଲୋକନାଥ ମଙ୍ଗରାଜଙ୍କୁ ମନ୍ଦିରର ସମସ୍ତ ଦାୟିତ୍ୱ ଓ ଆମ୍ଭ ପାଖେ ଥିବା ସମସ୍ତ କାଗଜପତ୍ରମାନ ଚାର୍ଜ ବୁଝାଇ ଦେଇଥିଲୁ । ଅବସର ସମୟ ଅନ୍ତେ ପୁନର ଉକ୍ତ ଚଣ୍ଡେଶ୍ୱର ଦେବଙ୍କ କାର୍ଯ୍ୟଭାର ଗ୍ରହଣ କରିବା ନିମିତ୍ତ ଟ୍ରଷ୍ଟି ଲୋକନାଥ ମଙ୍ଗରାଜଙ୍କ ନିକଟକୁ ଜଣାଇଥିବାରେ ମଙ୍ଗରାଜ ମହାଶୟ ନାନାପ୍ରକାର ଟାଳଟୁଳ ଦ୍ୱାରା ଚାର୍ଜ ଦେଇ ନ ଥିଲେ । ଉକ୍ତ ବିଷୟ ଅନେକବାର ଏଣ୍ଡୋଉମେଣ୍ଟ କମିଶନରଙ୍କୁ ଜଣାଇ କମିଶନର ମହୋଦୟ ଆମ୍ଭଙ୍କୁ ଚାର୍ଜ ବୁଝି-ନେବାକୁ ଓ ଲୋକନାଥ ମଙ୍ଗରାଜ ଚାର୍ଜ ବୁଝାଇ ଦେବାକୁ ୧୨ ଗୋଟି ଚିଠି ପଠାଇଥିଲେ, ଆମ୍ଭେ ଚାର୍ଜ ପାଇ ନ ଥିବା ଅବସ୍ଥାରେ କମିଶନଙ୍କ ପିରଦ୍ଧାରୁ ଖଣ୍ଡିଏ ଚିଠି ପାଇଲୁ ଯେ ଶ୍ରୀ ଚଣ୍ଡେଶ୍ୱରଙ୍କ ମନ୍ଦିରରେ ପୁଣି ନୂଆ ହୋଇ ଗୋଟିଏ ଟ୍ରଷ୍ଟି ବୋର୍ଡ଼ ପାଞ୍ଚବର୍ଷପାଇଁ ଗଢ଼ା ଯାଇଅଛି । ଉକ୍ତ ବୋର୍ଡ଼ରେ ସଭ୍ୟରୂପେ ପୂର୍ବୋକ୍ତ ଆଡ଼-ଭାଇଜରି ବୋର୍ଡ଼ର କେତେଜଣ ସଭ୍ୟ ଓ ଶ୍ରୀ ନରସିଂହ ମହାପାତ୍ର ସା: ଚଣ୍ଡେଶ୍ୱର, ଶ୍ରୀ ପରୀକ୍ଷିତ ପ୍ରେଷ୍ଠରୀ ସା: ମୁଣ୍ଡାଳ ସ୍ଥାନ ପାଇ-ଅଛନ୍ତି । ଆଉବ କେତେ ଦିନ ପରେ କମିଶନରଙ୍କ ପିରସ୍ଥାରୁ ନୂତନ ଟ୍ରଷ୍ଟିମାନଙ୍କୁ ଚାର୍ଜ ବୁଝାଇବାର ଆଦେଶ ପାଇଲୁ । ଉକ୍ତ ଚିଠି ଓ ଆମ୍ଭେ ଛୁଟି ନେବା ସମୟେ ଚାର୍ଜ ଦେଇ ଚାର୍ଜ ଫେରି ପାଇ ନ ଥିବା ନିଜ ହାତରୁ ଖର୍ଚ୍ଚ କରିଥିବା ଟଙ୍କା ଫେରି ପାଇବାପାଇଁ ଗୋଟିଏ ଦରଖାସ୍ତ ଗତ ତା ୨୭।୧୦।୧୯୫୦ ଏଣ୍ଡୋଉମେଣ୍ଟ କମିଶନର ଶ୍ରୀ ବାଳକୃଷ୍ଣ ପାତ୍ରଙ୍କ ନିକଟେ ଦେଇଥିଲୁ । ଉକ୍ତ ଦରଖାସ୍ତ ବିଚାରପାଇ କଟକ ମୁକାମକୁ ଯିବାକୁ ନୋଟିସ ପାଇ ଦରଖାସ୍ତ ଲିଖିତ ଘଟଣାମାନ କମିଶନରଙ୍କୁ ମୌଖିକରେ ଜଣାଇ

ଥିଲେହେଁ କମିଶନର ମହୋଦୟ ଆମ୍ଭ ହାତରୁ ଖର୍ଚ୍ଚ ହୋଇଥିବା ଟଙ୍କାର ଜମା ଖର୍ଚ୍ଚ ଫର୍ଦ୍ଦ ସେ ପାଇ ପାରି ନଥିବା ମତ ବ୍ୟକ୍ତ କଲେ । ତେଣୁ ଧର୍ମ୍ମ ଅନୁଷ୍ଠାନମାନଙ୍କର ଉନ୍ନତିକଳ୍ପେ ସ୍ୱହସ୍ତରୁ ଅର୍ଥବ୍ୟୟ କରି ପ୍ରତ୍ୟେକ ସମୟରେ କମିଶନରଙ୍କୁ ଖର୍ଚ୍ଚର ରସିଦ ଦିଆ ଯାଇଥିଲେ ମଧ୍ୟ ଏପରି କଥା ଶୁଣି ମନରେ ଦୁଃଖଜାତ ହେଲା ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ନୂତନ ହୋଇ ଦ୍ୱିତୀୟ ପାଞ୍ଚବର୍ଷ ପାଇଁ ନିଯୁକ୍ତ ପାଇଥିବା ଟ୍ରଷ୍ଟିମାନେ ପ୍ରାଚୀନ କଳା ପ୍ରାଚୁର୍ଯ୍ୟ ପୂର୍ଣ୍ଣ ମନ୍ଦିରଟିକୁ ମରାମତ କରିବାକୁ ଚେଷ୍ଟାକଲେ । ପୂର୍ବ ଏଣ୍ଡାଉମେଣ୍ଟ କମିଶନର ରଙ୍ଗାରାଓ ଓ ପୂର୍ବ ଟ୍ରଷ୍ଟିବୋର୍ଡ଼ର ସଭ୍ୟମାନଙ୍କ ପ୍ରଚେଷ୍ଟା ଦ୍ୱାରା ଭାରତ ସରକାରଙ୍କ ପ୍ରାଚୀନକୀର୍ତ୍ତିରକ୍ଷା ବିଭାଗର ଦୃଷ୍ଟି ଆକର୍ଷଣ କରିଯାଇ ସେହି ବିଭାଗର ବହୁ କର୍ମକର୍ତ୍ତା ଚଣ୍ଡେଶ୍ୱର ମନ୍ଦିରଟିକୁ ଓଡ଼ିଶାର ଗୋଟିଏ ପ୍ରାଚୀନକୀର୍ତ୍ତି ରୂପେ ଗ୍ରହଣ କରିଥିଲେ ଏବଂ ବିଭାଗୀୟ ନିୟମାନୁଯାୟୀ ଟ୍ରଷ୍ଟିବୋର୍ଡ଼ ଠାରୁ ଏହାର ସୁରକ୍ଷା ନିମନ୍ତ ତାଙ୍କ ବିଭାଗୀୟ ଏଗ୍ରୀମେଣ୍ଟ ଫର୍ମଦ୍ୱାରା ଏକ ଏଗ୍ରିମେଣ୍ଟ ଏଣ୍ଡାଉମେଣ୍ଟ କମିସନରଙ୍କ ଜରିଆରେ ନେଇଥିଲେ । ନୂତନ ଟ୍ରଷ୍ଟିମାନେ ତାହା ପ୍ରତି କୌଣସି ଦୃଷ୍ଟି ନଦେଇ ମନମୁଖି ଭାବେ ଚୂନାଁମେଣ୍ଟ ଆଦିରେ ସମସ୍ତ ମନ୍ଦିର କଳାକୁ ଚିରଦିନପାଇଁ ଲୁଚାଇବାକୁ ଚେଷ୍ଟା ଚଳାଇବାରୁ କେତେ ଗୁଡ଼ିଏ କଳାପ୍ରେମୀ ଐତିହାସିକ ଭ୍ରମଣକାରୀ ଜନ ସାଧାରଣ ଏହି ବାଲି ସିମେଣ୍ଟ ଲେପା ମରାମତର ବିରୋଧ କରି ଏଣ୍ଡାଉମେଣ୍ଟ କମିଶନରଙ୍କ ନିକଟକୁ ଟ୍ରଷ୍ଟିମାନଙ୍କର ଏହି ଅପଚେଷ୍ଟାକୁ ବନ୍ଦ କରିବା ମର୍ମରେ ଓ ପ୍ରାଚୀନ କୀର୍ତ୍ତିରକ୍ଷା ବିଭାଗ ଜରିଆରେ ସମ୍ମିଳିତ ଚେଷ୍ଟାରେ ନିର୍ମ୍ମାଣ କରାଯିବା ପାଇଁ ଆବେଦନ କରିଥିଲେ । ତଦନୁଯାୟୀ ଉକ୍ତ ମରାମତି କାର୍ଯ୍ୟ ସ୍ଥଗିତ ରଖାଯିବା ପାଇଁ କମିସନର ଗତ ତା ୩୦।୧୨।୬୭ ନଂ ୪୦୧୭-୧୮

ମ୍ଦର ଟଟିଦ୍ୱ ଗ ଟ୍ରଷ୍ଟିମାନଙ୍କୁ ଓ ସର୍ବସାଧାରଣଙ୍କୁ ଜଣାଇଥିଲେ । ପୁରୀ ତା ୧୨ । ୧୧ । ୫୬ ରିଖ ନ ୫୧୯୧-୯୨/ '୯୭ (') ଟଠୀଦ୍ୱାଗ ଟ୍ରଷ୍ଟିମାନେ ମରାମତି କରିବାକୁ ଆଦେଶ ଦେଇଥିଲେ । ଟ୍ରଷ୍ଟିମାନେ ଉକ୍ତ ଆଦେଶ ପାଇ କୌଣସି ଉପଯୁକ୍ତ ବିଜ୍ଞ କାରିଗର ବା ଇଞ୍ଜିନିୟରଙ୍କ ପରାମର୍ଶ ନନେଇ ମନ୍ଦିର ଚୂଡ଼ାଆଡ଼ୁ ମରାମତି କାର୍ଯ୍ୟ ଆରମ୍ଭ କଲେ । ବହୁ କାଳର ଏହି ପ୍ରାଚୀନ ମନ୍ଦିରଟି ଶତଶତ ବର୍ଷଧରି ଟଳକାର ଲୁଣି ପବନ ଓ ଖର ବର୍ଷା ଖାଇ ଯୋଡ଼େଇ ଲୁହାସବୁ ମିଳେଇ ଯାଇ-ଥିଲା । ମନ୍ଦିର ଉପରେ ବହୁତ ଗୁଡ଼ିଏ ଓଜନଦାର ପଥର ଓ ଗୋଡ଼ି ସିମେଣ୍ଟର ଗୃପରେ ବର୍ଷାଋତୁରେ ବହୁ ଝଡ଼ ତୋଫାନ ହେବାରୁ ମନ୍ଦିରର ଉତ୍ତର ତରଫକୁ ନବନିର୍ମିତ ଚୂଡ଼ା ଓ ଉତ୍ତର ତରଫରୁ ଆଠଅଣା ଅଂଶ ତା ୬।୧୦।୫୫ ରିଖ ଆଶ୍ୱିନ ଶୁକ୍ଳ ଚତୁର୍ଦ୍ଦଶୀ ରାତିରେ ଭୁଷୁଡ଼ି ପଡ଼ିଲା । ମନ୍ଦିର ଭିତରେ ଓ ବାହାରେ ବହୁତ ପ୍ରସ୍ତର ଖଣ୍ଡମାନ ମନ୍ଦିରଦ୍ୱାର ରୁଦ୍ଧ କରିଦେବା ଦ୍ୱାରା ଠାକୁରଙ୍କ ଦୈନନ୍ଦିନ ନୀତି ଦୁଇ ତିନଦିନ ବନ୍ଦହୋଇ ଯାଇ-ଥିଲା । ଏହି ଦୁଃସମ୍ବାଦ ଶ୍ରବଣରେ କୁହୁଡ଼ି ଛଗଡ଼, ବାଣପୁର, ରଣପୁର ଓ ଖୋର୍ଦ୍ଧା ଅଞ୍ଚଳରୁ ଅସଂଖ୍ୟ ନରନାରୀ ସେମାନଙ୍କର ସମସ୍ତ ଜଞ୍ଜାଳକୁ ଛାଡ଼ି ମନ୍ଦିରର ଦୁର୍ଦ୍ଦଶାକୁ ଦେଖିବାକୁ ଆସି ସାଶ୍ରୁ ନେତ୍ରରେ ଓ ଘୋର ଦୁଃଖ ମନରେ ଫେରିଛନ୍ତି । ଚଣ୍ଡେଶ୍ୱର ଗ୍ରାମ ସନ୍ନିକଟ ଭକ୍ତବୃନ୍ଦଙ୍କ ଚେଷ୍ଟାରେ ମନ୍ଦିରଦ୍ୱାର ରୁଦ୍ଧ କରିଥିବା ବିଶାଳ ପ୍ରସ୍ତର ଖଣ୍ଡମାନ, ମନ୍ଦିର ଭିତରେ ଥିବା ପ୍ରସ୍ତର ଖଣ୍ଡମାନ ବାହାର କରାଗଲା । ଏତେବଡ଼ ଭୟାବହ ଦୁର୍ଘଟଣାରେ ଶ୍ରୀ ଚଣ୍ଡେ-ଶ୍ୱର ଦେବଙ୍କ ଶକ୍ତି ଆଉ ଲିଙ୍ଗର କୌଣସି କ୍ଷତି ନ ହୋଇଥିବା ଏକ ଐଶୀଶକ୍ତିର ପରାକାଷ୍ଠା ବୋଲି ଜନସାଧାରଣଙ୍କ ମନରେ ଧାରଣା ଜନ୍ମିଛି । ମନ୍ଦିରର ଉତ୍ତର ତରଫରେ ଥିବା କମଣ୍ଡଳୁ

ଉମାମୂର୍ତ୍ତି ଭାଙ୍ଗି ଯାଇଥିଲା । ତାହା ବର୍ତ୍ତମାନ ଜଣେ ଉପଯୁକ୍ତ କାରିଗରଙ୍କ ଦ୍ୱାରା କେତେକାଂଶ ଯୋଡ଼ାହୋଇ ମନ୍ଦିର ବେଢ଼ା ମଧ୍ୟରେ ରଖାଯାଇ ଅଛନ୍ତି । ସେ ମୂର୍ତ୍ତିଙ୍କର ଫଟୋ ଏବଂ ମାହାତ୍ମ୍ୟ ପୁସ୍ତକରେ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ଦିଆଯାଇଅଛି । ଲେଖକ ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି ଥିବା ସମୟରେ ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ମନ୍ଦିର ମଣ୍ଡପ ସନ୍ନିକଟରେ ବିନାୟକ ମହାପାତ୍ରଙ୍କ ସମ୍ପାଦକତ୍ୱରେ ଗତ ତା ୨୧।୮।୪୮ ରିଖ କୁହୁଡ଼ୀ ଛଗଡ଼ର କେତେକ ଧର୍ମପ୍ରାଣ ବ୍ୟକ୍ତିଙ୍କ ଦ୍ୱାରା ଜୀର୍ଣ୍ଣ ସଂସ୍କାର କମିଟି ଗଢ଼ାଯାଇ-ଥିଲା । ମାତ୍ର ସଙ୍ଗେ ସଙ୍ଗେ ସେ କମିଟିର ଅବସାନ ଘଟିଥିଲା । ମନ୍ଦିରଟି ଭାଙ୍ଗିବା ପୂର୍ବରୁ ଏହାର ପରିଚାଳନା ଭଲ ହେଉଥିବାରୁ ଏହାକୁ ଦେବୋତ୍ତର କମିଶନରଙ୍କ ଖାସ ଦାୟିତ୍ୱରେ ରଖାଯାଇ ତାଙ୍କ ତରଫରୁ ଜଣେ ଏକଜିକ୍ୟୁଟିଭ ଅଫିସର ନିଯୁକ୍ତ ହେବାର ଗୋଟିଏ ଆଦେଶ ଆମ୍ଭେ ମନ୍ଦିରର ଭୂତପୂର୍ବ ମ୍ୟାନେଜିଂ ଟ୍ରଷ୍ଟିଭାବେ ଚିଠିଦ୍ୱାରା କମିଶନରଙ୍କ ଅଫିସରୁ ପାଇଥିଲୁ । (ନଂ ୯୭୦-୮୨ ତା ୨।୧୧।୫୫ ନଂ ୬୮୩ ସମି ଅର୍ଡର) ତା ପରେ ଶ୍ରୀ ନରସିଂହ ମହାପାତ୍ରଙ୍କ ସହ କେତେଜଣ ଉଦ୍ୟମୀ ବ୍ୟକ୍ତି ଟ୍ରଷ୍ଟିରେ ନିଯୁକ୍ତ ପାଇଥିଲେ । ତେଣୁ ଆଶାପୋଷଣ କରିଥିଲୁ ମନ୍ଦିରର ଦୁରବସ୍ଥା କ୍ରମଶଃ ବଦଳି ଗୋଟିଏ ନୂଆ ମନ୍ଦିର ଓ ନୂଆ ଶୃଙ୍ଖଳା ଦେଖାଯିବ । ମାତ୍ର ଦୁର୍ଭାଗ୍ୟକୁ ମନ୍ଦିରଭାଙ୍ଗିବା ସଙ୍ଗେ ସଙ୍ଗେ ଯଥାସମ୍ଭବ ଟ୍ରଷ୍ଟି-ମାନଙ୍କର ମନ ଭାଙ୍ଗି ପଡ଼ିଥିବା ପ୍ରାୟ ଅନୁମିତ ହେଲା । ଟ୍ରଷ୍ଟିମାନେ ହୁଏତ ସମଷ୍ଟିଗତ ଭାବେ ମନ୍ଦିରଟି ନୂତନ ଭାବେ ତିଆରି କରିବାକୁ ଏକତାବଦ୍ଧ ହୋଇ ଭକ୍ତ ଜନସାଧାରଣଙ୍କ ତତ୍‌କାଳୀନ ଆଗ୍ରହକୁ ରୂପାୟିତ କରି ପାରିଥିଲେ ମନ୍ଦିର ଗଠନ କାର୍ଯ୍ୟ ସୁଗମ ହୋଇ ପାରିଥାନ୍ତା । ମନ୍ଦିର ଭାଙ୍ଗି ପଡ଼ିଥିବା ମର୍ମରେ ବହୁତ ଲେଖାମାନ ସର୍ବସାଧାରଣଙ୍କଠାରୁ ଖବର କାଗଜରେ ପ୍ରକାଶ ପାଇ ଏଣ୍ଡୋଉମେଣ୍ଟ

କମିଶନର ତଥା ପ୍ରତ୍ନତତ୍ତ୍ୱ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ଟ୍ରଷ୍ଟିବୋର୍ଡ଼ ଜରିଆରେ ସର୍ବସାଧାରଣ ଜଣାଇ ଥିଲେ । ତଦ୍ଦ୍ୱାରା କେତେଜଣ ଇଞ୍ଜିନିୟର ଚଣ୍ଡୀଶ୍ୱର ମନ୍ଦିରର ଅବଶିଷ୍ଟାଂଶ ଯାହାକି ବିପଦସଂକୁଳ ଭାବେ ଅଛି ତାକୁ ପରିଦର୍ଶନ ପାଇଁ ଆସି ଫଟୋଆଦି ନେଇଥିଲେ । ଗତ ତା ୧୩।୩।୮୭ ରିଖରେ ଏଣ୍ଡାଉମେଣ୍ଟ କମିଶନର ଶ୍ରୀ ଚନ୍ଦ୍ରମଣି ମହାପାତ୍ର ଚଣ୍ଡେଶ୍ୱର ମନ୍ଦିର ପରିଦର୍ଶନକୁ ଆସି ଆମ୍ଭ ସମେତ ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି ଓ ମନ୍ଦିରର ବହୁ ମାଳୀ, ବ୍ରାହ୍ମଣ ଓ ସେବକଙ୍କ ଉପସ୍ଥିତିରେ ମନ୍ଦିର ପୁନର୍ଗଠନ ପାଇଁ ଗୋଟିଏ କମିଟି କରିଯିବାର ପ୍ରସ୍ତାବ ଦେଇ ଥିଲେ । ତଦନୁଯାୟୀ ଆମ୍ଭେ ଗତ ତା ୨୨।୩।୮୭ରିଖେ ଟ୍ରଷ୍ଟିବୋର୍ଡ଼ର କେତେକ ସଭ୍ୟଙ୍କୁ ଓ ଟାଙ୍ଗୀ ଥାନାର ଗଣ୍ୟ. ମାନ୍ୟ, ବଦାନ୍ୟ ବ୍ୟକ୍ତିଙ୍କୁ ଡକାଇ କମିଶନରଙ୍କ ମତାମତ ପ୍ରକାଶ କରିଥିଲୁ ଓ ଶ୍ରୀଚଣ୍ଡେଶ୍ୱର ଦେବଙ୍କ ମନ୍ଦିର ପୁନର୍ଗଠନ ପାଇଁ ଉପସ୍ଥିତ ଜନତାକୁ ନିବେଦନ କରିଥିଲୁ । ତଦନୁଯାୟୀ କେତେବାର ଉକ୍ତ କମିଟି ବସି ଆଲୋଚନା ହୋଇଥିଲା । ଚଣ୍ଡେଶ୍ୱର ଦେବଙ୍କ ମନ୍ଦିରର ଏକ୍‌ଜିକ୍ୟୁଟିଭ୍ ଅଫିସର ଓ ଏଣ୍ଡାଉମେଣ୍ଟ ଇନ୍‌ସ୍‌ପେକ୍ଟର ଶ୍ୟାମ-ସୁନ୍ଦର ଦାସଙ୍କ ସଭାପତିତ୍ୱରେ ଗତ ତା୨୮।୭।୧୯୮୭ ରିଖେ ମନ୍ଦିର ଜୀର୍ଣ୍ଣସଂସ୍କାର କମିଟି ଗଠିତ ହୋଇ କେତେକ ବିଷୟ ଆଲୋଚନା କରାଯାଇ ପୋଷ୍ଟାଲ ସେଭିଙ୍ଗସ୍ ବ୍ୟାଙ୍କରେ ବହିଟିଏ ଖୋଲିବା ଓ କେତେକ ପ୍ରକାର ପତ୍ରିକା, ଚାନ୍ଦାଆଦାୟ ଚେକ୍ ଆଦି କରି ଆଣିବା ପାଇଁ ମ୍ୟାନେଜିଂ ଟ୍ରଷ୍ଟି ନରସିଂହ ମହାପାତ୍ରଙ୍କ ଠାରୁ ଟ୨୦୦ଙ୍କା ଉକ୍ତ ସଭାପତି ନେଇଥିଲେ । ମାତ୍ର ସେ ମହାଶୟ ପ୍ରକାର ପତ୍ର ଓ ଚେକ୍ ଛପାଇଲେ କି ନାହିଁ ଓ ଚାନ୍ଦା ମନ୍ଦିର ଜୀର୍ଣ୍ଣ ସଂସ୍କାର କମିଟିର ପାଶ ବହିରେ ଜମାକଲେ, କି ନାହିଁ ତାହା

ଆଉ ସର୍ବ ସାଧାରଣ ଅଥବା ଆମ୍ଭେ ଜାଣିବାର ସୁଯୋଗ ପାଇ ନଥିଲୁ ତେଣୁ ଜୀର୍ଣ୍ଣସଂସ୍କାର କମିଟିର ସମସ୍ତକାର୍ଯ୍ୟ ସମାଧି ହୋଇଥିଲା । ଉକ୍ତ କମିଟିକୁ ମିଶାଇ ତିନୋଟି କମିଟି ଆମ୍ଭ ଜୀବନକାଳ ମଧ୍ୟରେ ଲୋପ ପାଇ ଥିବାରୁ ଅତ୍ୟନ୍ତ ଦୁଃଖ ଅନୁଭବ କଲୁ ।

ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ମନ୍ଦିରର ଦୁରବସ୍ଥା ଦୃଷ୍ଟେ ଟ୍ରଷ୍ଟି-ମାନଙ୍କର ମନ୍ଦିର ଉନ୍ନତି ପ୍ରତି ଉଦାସୀନତା ହେତୁ ଉକ୍ତ ସନ ୧୯୫୮ ମସିହାରେ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ସେବକ ମାନଙ୍କର ବୈଠକହୋଇ ଶ୍ରୀ ଚଣ୍ଡେଶ୍ୱର ଦେବଙ୍କ ଭଗ୍ନ ମନ୍ଦିର ପୁନର୍ଗଠନ ପାଇଁ ଆଲୋଚନା ହୋଇଥିଲା । ସେହି କମିଟିର ନିର୍ଦ୍ଦେଶାନୁଯାୟୀ ଆମ୍ଭ ପଲ୍ଲୀର ବର୍ତ୍ତମାନର ମ୍ୟାନେଜିଂ ଟ୍ରଷ୍ଟି ଓ ଆଉ କେତେକ ସେବକ ମାନଙ୍କ ମିଳିତ ସ୍ୱାକ୍ଷର ଆବାହକ ଭାବେ ଗତ ତା ୨୪।୧୧।୫୮ ରିଖେ ଟାଙ୍ଗୀ ଥାନା ଓ ତତ୍ ନିକଟବର୍ତ୍ତୀ ରଣପୁର ଓ ବାଣ-ପୁର ଥାନାର କେତେକ ଧର୍ମପ୍ରାଣ ଭଦ୍ରବ୍ୟକ୍ତିମାନଙ୍କୁ ଶ୍ରୀ ଚଣ୍ଡେଶ୍ୱର ମନ୍ଦିରଠାରେ ଏକତ୍ରିତ ହେବାପାଇଁ ଆହ୍ୱାନ କରାଯାଇଥିଲା । ଏହି ମହତ କାର୍ଯ୍ୟ ପ୍ରତି ଉପସ୍ଥିତ ପ୍ରତ୍ୟେକ ଭଦ୍ରବ୍ୟକ୍ତିଙ୍କ ସଦିଚ୍ଛା ପ୍ରକାଶ ପାଇବାରୁ କେତେକ ଉଦ୍ୟମୀ ବ୍ୟକ୍ତିଙ୍କୁ ନେଇ ଏକ ମନ୍ଦିର ଜୀର୍ଣ୍ଣସଂସ୍କାର ସମିତି ଚତୁର୍ଥବାର ଗଢାଯାଇଅଛି । ଉକ୍ତ କମିଟିରେ ଆମ୍ଭେ ମଧ୍ୟ ସଭ୍ୟରୂପେ ସ୍ଥାନ ପାଇଅଛୁ । ଉକ୍ତ କମିଟି ଗତ ସନ ୧୯୫୮ ମସିହା ଠାରୁ କାର୍ଯ୍ୟାରମ୍ଭ କରି ସନ ୧୯୫୯ ମସିହା କମିଟି ଜନ୍ମ ଉତ୍ସବ ଅନ୍ତେ ସମ୍ପ୍ରତି ସନ ୧୯୬୦ ମସିହାର ଦ୍ୱିତୀୟ ବର୍ଷର କାର୍ଯ୍ୟ ଚଳାଉ ଅଛନ୍ତି । ଏହି କମିଟିର ପ୍ରାଥମିକ ଖର୍ଚ୍ଚ ପାଇଁ ଚଣ୍ଡେଶ୍ୱର ଦେବ ସେବକ ନିଯୋଗ ସମିତି ଉକ୍ତ କମିଟି ହସ୍ତେ ଗତ ତା ୨୮।୧୦।୫୮ ରିଖେ ୭୮୦୯ ଦାନ କରିଥିଲେ । ସେହି

ଟଙ୍କାକୁ ମୂଳଧନ ରୂପେ କମିଟି ପାଇ ଗତ ସନ ୧୯୫୮ ମସିହା ଶ୍ରୀ ଚନ୍ଦ୍ରେଶ୍ୱର ଦେବଙ୍କ ବିଶାଳ କାର୍ତ୍ତିକ ପୂର୍ଣ୍ଣିମା ମେଳା ପରିଚାଳନା ଓ ଚାନ୍ଦା ଆଦାୟ ୧୯୫୯ ମସିହାପାଇଁ ଥିବା ଟଙ୍କା ପୂର୍ବୋକ୍ତ ପୋଷ୍ଟାଲ ସେଭିଙ୍ଗସ ବ୍ୟାଙ୍କ ବହିରେ ଜମା ରଖା ଯାଇଅଛି ।

ବର୍ତ୍ତମାନ ମନ୍ଦିର ଜୀର୍ଣ୍ଣସଂସ୍କାର କମିଟିକୁ ସରକାରୀ ରେଜି-ଷ୍ଟ୍ରେସନ କରାଯାଇ ବାଇ ଲ ଅନ୍ତର୍ଭୁକ୍ତ କରାଯିବା ପ୍ରସ୍ତାବ ଅଛି । ଏହାଦ୍ୱାରା ସୁଗତମତ ଜମାଖର୍ଚ୍ଚ ରଖାଯିବା ସଙ୍ଗେ ସରକାରୀ ଅଡ଼ିଟରମାନଙ୍କ ଦ୍ୱାରା ଅଡ଼ିଟ କରାଯାଇ କମିଟିର ବାର୍ଷିକ ରିପୋର୍ଟରେ ଜମାଖର୍ଚ୍ଚର ବିସ୍ତୃତ ବିବରଣମାନ ସର୍ବସାଧାରଣରେ ପ୍ରକାଶ କରାଯିବା ପ୍ରସ୍ତାବ ଅଛି । ଏହାର ପ୍ରମାଣ ସ୍ୱରୂପ ଆମ୍ଭ ଜୀବନରେ ଇତପୂର୍ବରୁ ତିନିଗୋଟି ଜୀର୍ଣ୍ଣସଂସ୍କାର କମିଟିର ବିଲୋପ ଦେଖିବାକୁ ପାଇଛୁ । ଏହାଦ୍ୱାରା ପୂର୍ବୋକ୍ତ ଭୟର କୌଣସି କାରଣ ରହିବ ନାହିଁ । ବର୍ତ୍ତମାନ କମିଟିର ଉଦ୍ୟମୀ କର୍ମୀମାନଙ୍କ ସହଯୋଗରେ ଗତ ତା ୨୪।୧୦।୫୯ ରିଖେ ବାର୍ଷିକ ଜନ୍ମୋତ୍ସବ ପର କମିଟିରେ ଆଉ ମଧ୍ୟ କେତେଜଣ ଉତ୍ସାହୀ କର୍ମୀ ସଭ୍ୟଭୁକ୍ତ ହୋଇଅଛନ୍ତି । ମନ୍ଦିର ଜୀର୍ଣ୍ଣସଂସ୍କାର କାର୍ଯ୍ୟକାରୀ କମିଟିର ପୃଷ୍ଠପୋଷକଭାବେ ବିଭିନ୍ନ କାର୍ଯ୍ୟପାଇଁ ପୃଥକ୍ ପୃଥକ୍ ଭାବେ ତିନିଗୋଟି କମିଟି ଗଢ଼ା ଯାଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ତାର ସ୍ୱରୂପ ଜଣାଯାଇ ନାହିଁ । ତେଣୁ କମିଟିର ହିତକାମୀ ବନ୍ଧୁଗଣଙ୍କୁ ଅନୁରୋଧ କମିଟିର ଲକ୍ଷ୍ୟ ଚନ୍ଦ୍ରେଶ୍ୱର ଦେବଙ୍କ ଭଗ୍ନ ମନ୍ଦିର ପୁନର୍ଗଠନ ମାର୍ଗରେ ପ୍ରତ୍ୟେକ ଲାଗି ଭିକ୍ଷାଦ୍ୱାରା ପାଣ୍ଠି ସଂଗ୍ରହ ଓ ଦେବୋତ୍ତର କମିଶନରଙ୍କ ଗତ

···ମସିହା ନ··· ···ମ୍ବର ବର୍ଣ୍ଣିତ ସ୍କିମ ଅର୍ଡ଼ରର ବନୋବସ୍ତ ସଂଶୋଧନ ମାର୍ଗରେ ମନ୍ଦିରଟି ପୁନର୍ବାର ଗଠନ ହେବାକୁ ଯାଉ-ଥିବାବେଳେ ମନ୍ଦିର ପୂର୍ଣ୍ଣାଙ୍ଗ ନ ହେବା ପର୍ଯ୍ୟନ୍ତ ମନ୍ଦିର ଆୟର

